ମହାନ
# ଭାରତୀୟ ସ୍ତ୍ରୀରତ୍ନ
ଉପରେ ପ୍ରଶ୍ନ

୨














ଦବାଶୀଷ ରାଉତ
ନମ୍ବର ସି/୧
ରେ ୧୭
ଜେଲ୍

ଶ୍ରୀ ଉମେଶଚନ୍ଦ୍ର ଭୂୟାଁ
ବଣୀ ହାଇସ୍କୁଲ
ପୋ:ଅ: ବଣୀ
ଭାୟା: ଶିମୁଳିଆ

ଶ୍ରୀ ନୀରଜ କୁମାର ମହ
ଗ୍ରାମ: ଅସ୍ତିଆ
ପୋ:ଅ: ଶ୍ୟାମସୁନ୍ଦରପୁର

# ଜହ୍ନମାମୁଁ

ସମ୍ପାଦକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗି ରେଡ୍ଡୀ

ପ୍ରକୃତ ଜ୍ଞାନ କ'ଣ ? ଯାହା ମନୁଷ୍ୟକୁ ସତ୍ୟର ନିକଟତର କରେ । ସ୍ୱାର୍ଥ ବା ଅହଙ୍କାର-ସର୍ବସ୍ୱ ଜ୍ଞାନ ସମ୍ପନ୍ନ କରି ବି ମଣିଷ ଅଜ୍ଞାନୀ ରହେ । "ଜନକ ଉପତ୍ୟକାର କାହାଣୀ" ର ଏ ଅଧ୍ୟାୟ ତାହାହିଁ ସୂଚାଇ ଦିଏ ।

## ଅମରବାଣୀ

ମୃଦ୍‌ଘଟ ଇବ ସୁଖଭେଦ୍ୟା, ଦୁଃସନ୍ଧାନଶ୍ଚ ଦୁର୍ଜନୋ ଭବତି ।
ସୁଜନସ୍ତୁ କନକଘଟବଦ୍‌, ଦୁର୍ଭେଦ୍ୟଶ୍ଚାଶୁସନ୍ଧେୟଃ ॥

[ମାଟି କଳସି ଥରେ ଭାଙ୍ଗିଗଲେ ତାକୁ ଯୋଡ଼ିବା ସହଜ ନୁହେଁ । ସୁନା କଳସି ସହଜରେ ଭାଙ୍ଗେ ନାହିଁ, ଭାଙ୍ଗିଲେ ବି ସହଜରେ ଯୋଡ଼ି ହୁଏ । ଦୁର୍ଜନଙ୍କ ଭିତରେ ବନ୍ଧୁତା ଭଙ୍ଗିଲେ ଯୋଡ଼େ ନାହିଁ; ସଜ୍ଜନଙ୍କ ଭିତରେ ମନ ସହଜରେ ମିଳିଯାଏ ।]

ବର୍ଷ : ୨୧ ଏପ୍ରିଲ ୧୯୮୮ ଅଙ୍କ : ୧୦

ପ୍ରତି ସଂଖ୍ୟା : ଟ. ୨-୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦





## ମହାକାଶରେ ମନୁଷ୍ୟ

ରୁଷ ମହାକାଶଚାରୀ ରୋମାନେଙ୍କୋ ମହାକାଶରେ ୩୨୬ ଦିନ କାଳ ଅତିବାହିତ କରି ଓଜନହୀନ ବାତାବରଣରେ ମଣିଷ କେତେ ସ୍ୱାଭାବିକ ଭାବରେ ରହିପାରେ, ସେ ବିଷୟରେ ପରୀକ୍ଷା ନିରୀକ୍ଷା କରି ପୃଥିବୀକୁ ଫେରିଛନ୍ତି । ମହାକାଶରେ ରହିବାରେ ଏହା ରେକର୍ଡ ।

## ଜଳମଗ୍ନ ଦ୍ୱାରକା

ଶ୍ରୀକୃଷ୍ଣଙ୍କ ଦ୍ୱାରା ସ୍ଥାପିତ ନଗରୀ ଦ୍ୱାରକା ଶ୍ରୀକୃଷ୍ଣ ଦେହ-ତ୍ୟାଗ କଲାପରେ ସମୁଦ୍ରରେ ମଗ୍ନ ହୋଇଥିଲା ବୋଲି ଯେଉଁ କିମ୍ବଦନ୍ତି, ତାହା ସତ୍ୟ ବୋଲି ମନେ ହୁଏ । ସୌରାଷ୍ଟ୍ର ଉପକୂଳର ଅଦୂରରେ ୪୦୦୦ ବର୍ଷ ତଳେ ଏକ ନଗରୀ ଜଳମଗ୍ନ ହୋଇଥିଲା ବୋଲି ଏବେ ବହୁତ ପ୍ରମାଣ ମିଳିଲାଣି ।





## ଆର୍ଯ୍ୟମାନେ ଆଗନ୍ତୁକ ନୁହନ୍ତି

ଆର୍ଯ୍ୟମାନେ ଭାରତ ବାହାରୁ ଆସିଥିଲେ ଏବଂ ସେମାନଙ୍କ ସହ ସଂଘର୍ଷ ଯୋଗୁଁ ହରପ୍‌ପା ସଭ୍ୟତାର ଅବସାନ ହୋଇଥିଲା, ଏ ତତ୍ତ୍ୱ ଠିକ୍ ନୁହେଁ ବୋଲି ପ୍ରମାଣ ମିଳୁଛି । ନିକଟରେ ଜଣେ ଐତିହାସିକ ଭଗବାନ ସିଂହ ଆର୍ଯ୍ୟ ଓ ହରପପା ସଭ୍ୟତା ଏକ ସମୟରେ ତିଷ୍ଠି ଥିଲେ ବୋଲି ତଥ୍ୟ ଉପସ୍ଥାପନ କରିଛନ୍ତି ।

## କ୍ଷୁଦ୍ରତମ କୋରାନ୍

ହାତରେ ଲେଖା ଖଣ୍ଡିଏ କ୍ଷୁଦ୍ର କୋରାନ (୨.୦ ସେ. ମି. × ୨.୬ ସେ.ମି.) ମହମ୍ମଦ କମଲ ହୁସେନ୍‌ଙ୍କ ପରିବାର ତାବିଜ ରୂପେ ବ୍ୟବହାର କରୁଥିଲେ । ଏହାହିଁ ପୃଥିବୀର କ୍ଷୁଦ୍ରତମ କୋରାନ । ଦୁବାଇର ଗୋଟିଏ ଜନପଦ ସୁରକ୍ଷାଗାରରେ ତାହା ଗଚ୍ଛିତ ଅଛି ।



# ହଂସ ଓ ଡିମ୍ବକ

ଶାଲ୍ୱ ଦେଶର ରାଜା ବ୍ରହ୍ମଦତ୍ତ ନିଃସନ୍ତାନ ଥିଲେ । ଜଣେ ଋଷି ତାଙ୍କୁ କହିଲେ, "ତମର ପ୍ରଜାମାନେହିଁ ତମର ସନ୍ତାନ । ସେମାନଙ୍କ ଭିତରୁ କୌଣସି ମହତ୍ ଓ ବୀର ସ୍ୱଭାବର ପିଲା ବାଛି ନିଅ । ସେ ହେବ ତୁମର ଉତ୍ତରାଧିକାରୀ ।" କିନ୍ତୁ ରାଜାଙ୍କ ମନ ମାନିଲା ନାହିଁ । ସେ କୈଳାଶ ପର୍ବତକୁ ଯାଇ ଶିବଙ୍କୁ ଧ୍ୟାନ କଲେ ।

ତାଙ୍କ ପ୍ରାର୍ଥନା ପୂର୍ଣ୍ଣ ହେଲା । ତାଙ୍କର ଦୁଇ ରାଣୀ ହଂସ ଓ ଡିମ୍ବକ ନାମକ ଦୁଇ ଶିଶୁପୁତ୍ରଙ୍କୁ ଜନ୍ମ ଦେଲେ ।

"ରାଜପୁତ୍ରମାନେ ଯେପରି ସତ୍ ଶିକ୍ଷା ପାଇବେ, ସେ ବ୍ୟବସ୍ଥା କର ।" ରାଜାଙ୍କୁ ତାଙ୍କର ସେହି ଶୁଭେଚ୍ଛୁ ଋଷି ଉପଦେଶ ଦେଲେ । କିନ୍ତୁ ରାଜା ସ୍ନେହାନ୍ଧ ହୋଇ ସେ ଉପଦେଶ ପ୍ରତି ଧ୍ୟାନ ଦେଲେନାହିଁ । ଦୁଇ ବାଳକ ଯେତିକି ଯେତିକି ବଡ଼ ହେଲେ, ସେତିକି ସେତିକି ସ୍ୱାର୍ଥପର ହେଲେ । ସେମାନେ ତପସ୍ୟା ବି କରୁଥାନ୍ତି, କିନ୍ତୁ ବର ହିସାବରେ କାମନା କରୁଥାନ୍ତି ଅଧିକରୁ ଅଧିକ କ୍ଷମତା । ସମସ୍ତଙ୍କ ଉପରେ ପ୍ରଭୁ ବୋଲାଇବା ହେଲା ସେମାନଙ୍କର ଉଚ୍ଚାଭିଳାଷ ।

ସେତେବେଳେ ଦ୍ୱାରକାରେ ରାଜା ଥିଲେ କୃଷ୍ଣ । ସେ ହଂସ ଓ ଡିମ୍ବକଙ୍କ ପ୍ରଭୁତ୍ୱ ସ୍ୱୀକାର କଲେ ନାହିଁ । ଫଳରେ ଯୁଦ୍ଧ ହେଲା । ହଂସ ଯୁଦ୍ଧ କ୍ଷେତ୍ରରେ ମଲା; ଡିମ୍ବକ ପଳାଇ ଯାଇ ଯମୁନାକୁ ଡେଇଁପଡ଼ି ମଲା ।

ଋଷି ଦୀର୍ଘଶ୍ୱାସ ଛାଡ଼ି କହିଲେ, "ରାଜା, ଏଭଳି ପୁଅ ପାଇ ଲାଭ କ'ଣ ହେଲା ? ଯଦି ପୁଅ ଜନ୍ମ କଲ, ସେମାନଙ୍କୁ ସତ୍‌ମାର୍ଗରେ ଚଳାଇବା ନିମନ୍ତେ ଚେଷ୍ଟା କଲନାହିଁ କାହିଁକି ?"

କିନ୍ତୁ ସେତେବେଳକୁ ବହୁ ବିଳମ୍ବ ହେଲାଣି ।





# ସ୍ୱପ୍ନ ବିଳାସ

ଅନେକ ଦିନ ତଳର କଥା । ଅବନ୍ତୀପୁର ରାଜ୍ୟର ଗୋଟିଏ ଗାଁରେ ଗୋଟିଏ ବାଳକ ଥାଏ, ଯାହାକୁ ଲୋକେ ବିଳାସ ବୋଲି ଡାକୁଥାନ୍ତି । କଥା କ'ଣ କି, ଭୋଗବିଳାସରେ ରହିବା ପାଇଁ ତା'ର ବାସନା ଏତେ ପ୍ରବଳ ଯେ ଲୋକେ ତା'ର ଅସଲ ନାମ ଭୁଲିଯାଇଥାନ୍ତି ।

ଏକଦିଗରେ ଭୋଗବିଳାସରେ ରହିବାର ଇଚ୍ଛା, ଅନ୍ୟ ଦିଗରେ କିନ୍ତୁ ପରିଶ୍ରମ କରିବା ପାଇଁ ଅନିଚ୍ଛା—ଏହାହିଁ ହେଲା ସେ ବାଳକର ମନୋଭାବ । ଏଥିରେ ବିଳାସ ପାଇଁ ଆବଶ୍ୟକୀୟ ଅର୍ଥ ବା ସୁଯୋଗ କାହୁଁ ଆସିବ ?

ଥରେ ସେ ଗାଁର ଶିବମନ୍ଦିରରେ ଆସି ଜଣେ ସନ୍ନ୍ୟାସୀ ଆଶ୍ରୟ ନେଲେ । ବିଳାସ ଯାଇ ତାଙ୍କର ସେବା ଶୁଶ୍ରୂଷା କରିବାକୁ ଲାଗିଗଲା । ସନ୍ନ୍ୟାସୀ ସେଥିରେ କିଛି କହୁ ନଥାନ୍ତି ।

ଦିନେ ସନ୍ନ୍ୟାସୀ ମନ୍ଦିରରୁ ବିଦାୟ ନେଇ ଚାଲିଯିବାକୁ ବସିଲେ । ବିଳାସ ଯାଇ ତାଙ୍କୁ ପ୍ରଣାମ କରି କହିଲା, "ବାବା, ମୋତେ କିଛି ବର ଦିଅନ୍ତୁ ।"

ସନ୍ନ୍ୟାସୀ ଗମ୍ଭୀର ହୋଇ କହିଲେ, "ଯିଏ ସାଧନା କରିବାକୁ ଚାହୁଁଥିବ ବା ଭଗବାନଙ୍କୁ ପାଇବାକୁ ଚାହୁଁଥିବ, ମୁଁ କେବଳ ତାକୁହିଁ ସାମାନ୍ୟ ସାହାଯ୍ୟ କରିପାରେଁ । ତୋର ଇଚ୍ଛା ଆରାମରେ ରହିବୁ । ମୁଁ ସେଥିରେ ତୋତେ କି ପ୍ରକାର ସାହାଯ୍ୟ ଦେଇ ପାରିବି ?"

"ଆଜ୍ଞା, ଆପଣଙ୍କର ଏତେ ସେବା କଲି ଆଉ ଆପଣ ମୋତେ କିଛି ବର ନଦେଇ ଚାଲିଯିବେ ?" ବିଳାସ ସମ୍ଭାଳି ନ ପାରି କହିଲା ।

ବିଳାସ ଅବଶ୍ୟ ଯେତେ ଦୂର ସମ୍ଭବ ନମ୍ର ଭାବରେ ଏକଥା କହିଲା, କିନ୍ତୁ ସେବା ପଛରେ

ଏ ମନ ଚାହୁଁଥାଏ ଯାହା···



ଥିବା ତା'ର ସ୍ୱାର୍ଥପର ଉଦ୍ଦେଶ୍ୟ ସେଥିରେ ସ୍ପଷ୍ଟ ହୋଇଗଲା । ସନ୍ନ୍ୟାସୀ ନୀରବ ରହିଲେ । ବିଳାସର ଆଉ ଧୈର୍ଯ୍ୟ ନଥାଏ । ସେ ପୁଣି କହିଲା, "ଆଜ୍ଞା, ଆପଣଙ୍କୁ ସେବା କଲେ କେତେ ଲାଭ ପାଇବି ବୋଲି ସ୍ୱପ୍ନ ଦେଖୁଥିଲି!"

"ସ୍ୱପ୍ନ ଦେଖୁଥିଲୁ ?" ସନ୍ନ୍ୟାସୀ ପଚାରିଲେ ।

"ହଁ, ଆଜ୍ଞା," କହିଲା ବିଳାସ ।

"ବାପା, ମୁଁ ତୋତେ ସେବା କରିବାକୁ କହିନଥିଲି କିମ୍ବା ତୁ ସେବା କରିବାର ଦେଖି ମୁଁ ବିଶେଷ ଉତ୍ସାହ ଅନୁଭବ କରୁନଥିଲି । ଠିକ୍ ଅଛି । ଗୋଟାଏ ବର ଦେଉଛି । ତୁ ଯେଉଁ ସ୍ୱପ୍ନ ଦେଖିବୁ, ତାହା ସତ ହେବ । ସେଥିରେ ତୋର ଭଲ ହେବ କି ମନ୍ଦ ହେବ, ସେକଥା ଅବଶ୍ୟ ମୁଁ କହିପାରିବି ନାହିଁ । ଆଉ ତୋର ଏ ଶକ୍ତି ଅଳ୍ପଦିନ ରହିବ ।" ସନ୍ନ୍ୟାସୀ ଏହା କହି ବିଳାସ ମୁଣ୍ଡରେ ଥରେ ହାତ ଥୋଇଦେଇ ଚାଲିଗଲେ ।

ବିଳାସ ଖୁସି ହୋଇଗଲା । ସ୍ୱପ୍ନ ସତ ହେଲେ ନିଶ୍ଚୟ ବହୁତ ଲାଭ ହେବ ବୋଲି ସେ ଧରିନେଲା । କିଛିଦିନ ପରେ ସେ ଯାଇ ଅବନ୍ତୀପୁରର ରାଜଧାନୀରେ ପହଞ୍ଚିଲା । ସେଠାରେ ଗୋଟାଏ ଚଟିଘରେ ବିଶ୍ରାମ ନେଉଥିବାବେଳେ ସେ ଲୋକେ ରାଜାଙ୍କ ବିଷୟରେ ଆଲୋଚନା କରୁଥିବାର ଶୁଣିଲା । ରାଜା କୁଆଡ଼େ ବହୁତ ଦୟାଳୁ ଓ ବହୁତ ସାହସୀ । ଯେକୌଣସି ଗରୀବ ବା ଦୁଃଖୀ ଲୋକ ତାଙ୍କ ପାଖରୁ ସାହାଯ୍ୟ ଭିକ୍ଷା କରି ନିରାଶ ହୁଏନାହିଁ ।

ଏହା ଶୁଣୁଁ ଶୁଣୁଁ ତାକୁ ନିଦ ଧରିଗଲା । ସେ ସ୍ୱପ୍ନ ଦେଖିଲା, ରାଜା ରାତିରେ ଏକୁଟିଆ ରାସ୍ତାରେ ବୁଲୁଛନ୍ତି । ଜଣେ ବୁଢ଼ା ଲୋକ ତାଙ୍କୁ କହିଲା, "ଆପଣ ଜଣେ ସାହସୀ ବୀର ଭଳି ଦିଶୁଛନ୍ତି । ମୋ କୁଡ଼ିଆରେ ଗୋଟାଏ ହେନ୍ତା ପଶିଛି । ତାକୁ ମାରି ପାରିବେ ?" ରାଜା ବୁଢ଼ା ପଛେ ପଛେ ଗଲେ । ବିଳାସର ନିଦ ଭାଙ୍ଗିଗଲା ।

ସେ ସକାଳେ ଯାଇ ରାଜାଙ୍କୁ ଭେଟିଲା ଓ ତା' ସ୍ୱପ୍ନ କଥା କହିଲା । ରାଜା ହସି ହସି କହିଲେ, "ବାଳକ, ମନେ ହୁଏ, ତମେ କିଛି ସାହାଯ୍ୟ ଚାହଁ । ସିଧାସଳଖ ସେକଥା

ନିଜର ସ୍ୱପ୍ନ ପ୍ରସଙ୍ଗ ଆଣିଲ କାହିଁକି ?" ରାଜା ତାକୁ ସାମାନ୍ୟ କିଛି ଅର୍ଥ ଦେଇ ବିଦା କରିଦେଲେ ।

କିନ୍ତୁ ପରଦିନ ସକାଳେ ରାଜାଙ୍କର କେତେଜଣ କର୍ମଚାରୀ ଯାଇ ଚଟିଘରେ ବିଳାସକୁ ଠାବ କଲେ ଓ ରାଜାଙ୍କ ପାଖକୁ ଡାକିନେଇ ଆସିଲେ । ରାଜା ତାକୁ ଦେଖି ଆନନ୍ଦରେ କହିଲେ, "ବାଳକ, ଦେଖୁଛି ତମର ଭବିଷ୍ୟତ୍ ଜାଣିବାର ଶକ୍ତି ଅଛି । ଗତ ରାତିରେ ସତରେ ମୁଁ ମୋ ରାଜ୍ୟର ଅବସ୍ଥା ଦେଖିବା ନିମନ୍ତେ ସହର ବାହାରେ ଥିବା ଗୋଟିଏ ଗାଁକୁ ଏକୁଟିଆ ଯାଇଥିଲି । ସତକୁ ସତ ଜଣେ ବୁଢ଼ା ମୋତେ ଡାକି ନେଇଗଲା ଓ ମୁଁ ହେଠା ଘଉଡ଼ାଦେଇ ଆସିଲି । ତମେ କ'ଣ ପୁରସ୍କାର ଚାହଁ କୁହ । କିନ୍ତୁ ତମେ ମୋ ଦରବାରରେ ରୁହ ।"

ଆନନ୍ଦରେ ବିଳାସ କଥା କହିପାରିଲା ନାହିଁ । ସେ ତ ଏଇଆ ଚାହୁଁଥିଲା ! ସେ କହିଲା, "ମହାରାଜ ! ମୋତେ ଖାଲି ଆରାମରେ ଖାଇ ପିଇ ରହିବାକୁ ଦିଅନ୍ତୁ ।" ରାଜା ସେହି ବ୍ୟବସ୍ଥା କରିଦେଲେ । ବିଳାସ ଆନନ୍ଦରେ ରହିଲା । ଦିନବେଳେ ଥରେ ଥରେ ଅଶ୍ୱାରୋହଣ କରି ସେ ସହର ଭିତରେ ବୁଲିଆସେ । ତାହାଠୁଁ ଅଧିକ ଆଉ କିଛି କରେ ନାହିଁ ।

ଦିନେ ସେ ଯାଇ ରାଜାଙ୍କୁ କହିଲା, "ମଣିମା, ମୁଁ ଗତ ରାତିରେ ଗୋଟାଏ ଅଦ୍ଭୁତ ସ୍ୱପ୍ନ ଦେଖିଛି । କହିବାକୁ ସାହସ ହେଉନାହିଁ ।"





ରାଜା ତାକୁ ଅଭୟ ଦେବାରୁ ସେ ଗପିଲା: "ମଣିମା, ମୁଁ ଦେଖିଲି ଜଣେ ସାଧୁ ଆସି ଆପଣଙ୍କ ଆଗରେ ଠିଆ ହୋଇ କହିଲେ କି ସେ ଆପଣଙ୍କୁ ହିମାଳୟ ନେଇଯିବାକୁ ଆସିଛନ୍ତି। ନଗଲେ ଆପଣଙ୍କର ମୃତ୍ୟୁ ଅନିବାର୍ଯ୍ୟ। ଆପଣ ଟିକିଏ ଇତସ୍ତତଃ କରି ସାଧୁଙ୍କ ସହ ଯିବାକୁ ବାହାରିଲେ। କିନ୍ତୁ ରାଜା ହେବ କିଏ? ଆପଣ ଏଆଡ଼େ ସେଆଡ଼େ ଅନାଇ ମୋତେ ଧରିନେଇ ସିଂହାସନରେ ବସାଇ ମୁକୁଟ ପିନ୍ଧାଇ ଦେଲେ। ମୁଁ ରାଜା ହେଲି। ଆପଣ ସାଧୁ ହୋଇ ଚାଲିଗଲେ।"

ରାଜା ଏ ସ୍ୱପ୍ନ ଶୁଣି କିଛି ନ କହି ପ୍ରାସାଦ ଭିତରକୁ ଚାଲିଗଲେ।

ପରଦିନ ସତକୁ ସତ ଜଣେ ସାଧୁ ଆସି ଦରବାରରେ ପହଞ୍ଚିଲେ ଓ ବଳସ ଯେପରି କହିଥିଲା, ରାଜାଙ୍କୁ ସେହିକଥା କହିଲେ। ରାଜା ବଳସକୁ ଧରିନେଇ ସିଂହାସନରେ ବସାଇ ଦେଇ ବାହାରି ଚାଲିଗଲେ। ଦରବାରର ଲୋକେ ପ୍ରଥମେ ହାୟ ହାୟ କଲେ ଓ ତା'ପରେ ନୂଆ ରାଜାଙ୍କର ଜୟଗାନ କଲେ।

ବଳସ ସିଂହାସନରେ ବସିବାର ଦୁଇଘଣ୍ଟା ପରେ ମନ୍ତ୍ରୀ ଆସି କହିଲେ, "ମହାରାଜ, ଆମର ଶତ୍ରୁ ରାଜା ସୁକାନ୍ତସେନ ଆମ ରାଜ୍ୟ ଦଖଲ କରିନେବାକୁ ପୁଣି ଥରେ ସୈନ୍ୟଦଳ ଧରି ମାଡ଼ି ଆସୁଛନ୍ତି।"

ବଳସ ଆତଙ୍କିତ ହେଲା ଓ କହିଲା, "ପୂର୍ବରୁ କ'ଣ ସେ ଆମ ରାଜ୍ୟ ଥରେ ଆକ୍ରମଣ କରିଥିଲେ?"

"ହଁ। କିନ୍ତୁ ସେତେବେଳେ ପୂର୍ବ ରାଜା ନିଜେ ସୈନ୍ୟ ଚାଳନା କରି ସୁକାନ୍ତସେନଙ୍କୁ ଘଉଡ଼ାଇ ଦେଇଥିଲେ। ବର୍ତ୍ତମାନ ଆପଣ ଆମ ସୈନ୍ୟବାହିନୀର ନେତୃତ୍ୱ ନେବେଟି?" ମନ୍ତ୍ରୀ ପଚାରିଲେ।

"ନା, ନା, ମନ୍ତ୍ରୀ ମହାଶୟ, ଆପଣ ସୁକାନ୍ତସେନଙ୍କ ସହ ସନ୍ଧିର ବ୍ୟବସ୍ଥା କରନ୍ତୁ।" ବଳସ କହିଲା।

ବଳସ ସେଦିନ ଖାଇ ପାରିଲା ନାହିଁ କି ନିଦରେ ଶୋଇ ପାରିଲା ନାହିଁ। ମଝି ରାତି

ବେଳକୁ ଘୁଇ ନିଦ ଧରି ଆସିଛି, ସେ ସ୍ୱପ୍ନ ଦେଖିଲା, ସେ ଶତ୍ରୁକୁ ଡରି ନଅର ଭିତରୁ ପଳାଇ ଯାଉଛି । କିନ୍ତୁ କିଏ ଜଣେ ତାକୁ ଧରି ପକାଉଛି ।

ନିଦ ଭାଙ୍ଗିବା ମାତ୍ରେ ସେ ନଅର ଭିତରୁ ପଳାଇବାକୁ ଚେଷ୍ଟା କଲା । କିନ୍ତୁ ଠିକ୍ ଫାଟକ ପାଖରେ ତାକୁ ଜଣେ କେହି ଖପ୍ କିନା ଧରି ପକାଇଲା । ସେ ଆଶ୍ଚର୍ଯ୍ୟ ହୋଇ ଅନାଇ ଦେଖିଲା ବେଳକୁ ତାକୁ ଧରିଥିବା ଲୋକ ଆଉ କେହି ନୁହନ୍ତି, ଖୋଦ୍ ରାଜା !

ରାଜା ତାକୁ ପ୍ରାସାଦ ଭିତରକୁ ନେଇ ଆସି ତାଠୁଁ ସବୁ ଶୁଣିଲେ ଓ କହିଲେ, "ଭୟ ନାହିଁ । ତୁମର କିଛି ଅପରାଧ ନାହିଁ । ତେବେ ତୁମେ ଭୀଷଣ ଅଳସୁଆ ଓ ସ୍ୱପ୍ନ ବିଳାସୀ । ତମେ ପ୍ରଥମେ ମୋ ସମ୍ପର୍କରେ ଯେଉଁ ସ୍ୱପ୍ନ ଦେଖିଥିଲ, ତାହା ସତ୍ୟ ହେବାର କାରଣ ସେ ସନ୍ନ୍ୟାସୀଙ୍କ ବର । କିନ୍ତୁ ପରେ ଯାହା ଦେଖିଲ, ତାହା ତୁମର ବାସନା ଓ କଳ୍ପନାର ଫଳ । ତମେ ମନେ ମନେ ଭାବିଥିବ, ତମେ ରାଜା ହୋଇ ପାରିଲେ କେଡ଼େ ସୁଖରେ ରହନ୍ତ । ତେଣୁ ସେମିତି ସ୍ୱପ୍ନ ଦେଖିଲ । ପରଦିନ ଯେଉଁ ସାଧୁ ଆସି ମୋତେ ହିମାଳୟ ଡାକିଲେ, ସେ ମିଛ ସାଧୁ । ମୋହରି ଜଣେ ଅମାତ୍ୟ ଛଦ୍ମବେଶରେ ଆସିଥିଲେ । ଶତ୍ରୁ ରାଜା ଆମ ରାଜ୍ୟ ଆକ୍ରମଣ କରିବା କଥା ବି ମିଛ । ମୁଁ ସେ ଖବର ତମକୁ ପଠାଇଥିଲି । ଫଳରେ ତମ ନିଜ ଭୟ ଯୋଗୁଁ ତମେ ପଳାଉଥିବାର ସ୍ୱପ୍ନ ଦେଖିଲ ଓ ଭୟ ଯୋଗୁଁ ଧରାପଡ଼ିବା କଥା ବି କଳ୍ପନା କରି ତାହା ସ୍ୱପ୍ନରେ ଦେଖିଲ । ସେମିତି ହେବ ବୋଲି ମୁଁ ଅନୁମାନ କରିଥିଲି । ଛାଡ଼ । ଏ ଟଙ୍କା ନିଅ । ଯାଇ ଗୋଟାଏ ଦୋକାନ କର । ନିଜ ପରିଶ୍ରମରୁ ସୁଖ ପାଇବାର ଚେଷ୍ଟା କର ।"

ବିଳାସ କାନ୍ଦ କାନ୍ଦ ହୋଇ ରାଜାଙ୍କୁ ଜୁହାର ହୋଇ ଟଙ୍କା ଥଳି ଧରି ବିଦାୟ ନେଲା ।





# ଦୁଇ ଡାକୁ

ଗୋପାଳ ଓ ଚନ୍ଦ୍ରଭାନୁ ଥିଲେ ଦୁଇ ମିତ୍ର । ଦୁହେଁ ଗରିବ ଘରର ପିଲା । ଚାଷବାସ କଲେ ଚଳନ୍ତା, କିନ୍ତୁ ସେମାନେ ଅଳ୍ପ ପାଠ ପଢ଼ି ପକାଇଥିଲେ ବୋଲି ଗାଁ ଲୋକଙ୍କ ଆଗରେ କ୍ଷେତବାଡ଼ିରେ କାମ କରିବାକୁ ଅସମ୍ମାନଜନକ ମନେ କଲେ !

"ଚାଲ, ସହରକୁ ଯିବା ।" ଦିନେ ଗୋପାଳ କହିଲା ।

"ମୁଁ ବି ସେଇଆ ଭାବୁଥିଲି । ସହରରେ ଆମ ଭଳି ଯୁବକଙ୍କୁ ସହଜରେ କାମଧନ୍ଦା ମିଳିଯିବ ।" ଚନ୍ଦ୍ରଭାନୁ କହିଲା ।

ଦୁହେଁ ଯାଇ ସହରରେ ପହଞ୍ଚି ପ୍ରଥମେ ବଡ଼ ବଡ଼ ଅନୁଷ୍ଠାନ ପ୍ରତିଷ୍ଠାନରେ ଯାଇ ଚାକିରି ଖୋଜିଲେ । କ୍ରମେ ହତାଶ ହୋଇ ପାନ ଦୋକାନରେ ଚାକିରି ଖୋଜିବା ଯାଏ ଆସିଲେ । କିନ୍ତୁ କିଛି ଲାଭ ହେଲା ନାହିଁ । ଏଣେ ଆଜି ଏ ମନ୍ଦିରରେ ତ କାଲି ସେ ମନ୍ଦିରରେ ମାଗଣା ପ୍ରସାଦ ଖାଇ ଖାଇ କେତେଦିନ ଚଳି ହେବ ?

"ଆମକୁ ମର୍ଯ୍ୟାଦା ଦେବାଭଳି ବୁଦ୍ଧି ଏ ସହରର ଲୋକଙ୍କର ନାହିଁ !" କହିଲା ଗୋପାଳ ।

"ଠିକ୍ କଥା ।" ଚନ୍ଦ୍ରଭାନୁ ଏକମତ ହେଲା ।

"ଚାଲ, ଚୋର କରିବା !" ଗୋପାଳ କହିଲା ।

"ମୁଁ ବି ସେଇଆ ଭାବୁଥିଲି । ଆମ ଭଳି ବୁଦ୍ଧିମାନ ପିଲାଏଁ ସହଜରେ ସେ କାମରେ ପାରଙ୍ଗମ ହୋଇଯିବା କଥା ।" କହିଲା ଚନ୍ଦ୍ରଭାନୁ ।

ସେମାନେ ସହରର ଗୋଟାଏ ଗଳି ବସ୍ତି ବାଛି ସେଇଠି ଥିବା ଲୋକଙ୍କ ଉପରେ ଆଖି ରଖିଲେ । ଗଳିର ଗୋଟାଏ କୋଣରେ ଜଣେ ଅଳଙ୍କାର-ବ୍ୟବସାୟୀ ରହୁଥାନ୍ତି । ସେମାନେ

ଗିରିଜା କୁମାର

ଝରକା ଦେଇ ଲକ୍ଷ୍ୟ କରି ଦେଖିଲେ, ସେ ଘରେ ଆସି ତାଙ୍କର ଗୋଟାଏ ଲୁହା ସିନ୍ଦୁକ ଖୋଲି କିଛି ଅଲଙ୍କାର ବାହାର କରି ସିନ୍ଦୁକରେ ତାଲା ପକାଇ ପୁଣି ଘରେ ଝୁଡ଼ ଦେଇ ବଡ଼ ରାସ୍ତାରେ ଥିବା ତାଙ୍କ ଦୋକାନକୁ ଗଲେ ।

"ବୁଝିଲ ? ସେ ସିନ୍ଦୁକରେ ବହୁତ ଅଲଙ୍କାର ଅଛି । ସେତକ ଧରି ଆମେ ଏ ସହର ଛାଡ଼ି ଅନ୍ୟ ସହରକୁ ଚାଲିଯିବା । ତେଣିକି ଆଉ ଚିନ୍ତା କ'ଣ ?" ଗୋପାଳ କହିଲା ।



ଗୋପାଳ ନକଲି ଚାବିକାଠି ଦ୍ୱାରା ତାଲା ଖୋଲିବା ବିଦ୍ୟାଟି ଶିଖିଥାଏ । ରାତିରେ, ଅଲଙ୍କାର ବେପାରୀ ଆସିବା ପୂର୍ବରୁ, ଗୋପାଳ ତାଲା ଖୋଲିଦେଲା । ଚନ୍ଦ୍ରଭାନୁ ଭିତରେ ପଶିଯିବା ପରେ ସେ ପୁଣି ତାଲା ବନ୍ଦ କରିଦେଲା । ଉଭୟଙ୍କ ଭିତରେ ସ୍ଥିର ହୋଇଥିଲା, ଗୋପାଳ ବାହାରେ ଜଗି ରହିଥିବ । ବେପାରୀ ଆସି ନିଦରେ ଶୋଇ-ଗଲେ ଚନ୍ଦ୍ରଭାନୁ ତାଙ୍କ ଶେଯ ତଳୁ ଚାବିକାଠି ବାହାର କରିନେଇ ସିନ୍ଦୁକ ଖୋଲି ଅଲଙ୍କାର-ତକ ବାହାର କରିନେବ ଓ ପଛପଟ ଦ୍ୱାର ଦେଇ ରାସ୍ତାକୁ ବାହାରି ଆସିବ । ଗୋପାଳ ସେଠି ଅପେକ୍ଷା କରିଥିବ ।

ଚନ୍ଦ୍ରଭାନୁ ବେପାରୀର ଶୋଇବା ଘର ଭିତରେ ଥିବା ଗୋଟାଏ ଖଟ ତଳେ ବସିଲା । ଅନେକ ରାତିରେ ବେପାରୀ ଆସିଲେ ଓ ଲଣ୍ଠନ ଆଲୁଅରେ ଅନେକ ସମୟ ଧରି ଖାତାପତ୍ର ଦେଖିଲେ । ମଝିରାତି ବେଳକୁ ସେ ଶୋଇଲେ ।

ଗୋପାଳ ଅପେକ୍ଷା କରିଥାଏ । ହଠାତ୍ କବାଟରେ କିଏ ମୃଦୁ ମୃଦୁ ଆଘାତ କଲା । ବେପାରୀ ଉଠି ପଡ଼ି ପଚାରିଲେ, "କିଏ ?"

"ମୁଁ ଆପଣଙ୍କ ଶ୍ୱଶୁରଙ୍କ ଗାଁରୁ ଆସିଛି । ଆପଣଙ୍କ ସ୍ତ୍ରୀ କିଛି ଜରୁରୀ ଖବର ପଠାଇଛନ୍ତି । କବାଟ ଖୋଲନ୍ତୁ ।" କେହି ଜଣେ କହିଲା ।

ବେପାରୀ ଉଠି ପଡ଼ି କବାଟ ଖୋଲିଦେବା ମାତ୍ରେ ଜଣେ ଲୋକ ଭିତରକୁ ପଶି ଆସି ଛୁରୀ ଦେଖାଇ କହିଲା, "ତମ ସିନ୍ଦୁକ ଖୋଲି

ଆଉ ଯାହା ମୂଲ୍ୟବାନ ଜିନିଷ ଅଛି ସବୁ ଖଣ୍ଡିଏ ଲୁଗାରେ ବାନ୍ଧି ମୋତେ ଦେଇଦିଅ । ନହେଲେ ମରିବ ।"

"ମୁଁ ଦେବି ନାହିଁ ।" ଦୃପ୍ତ କଣ୍ଠରେ ବେପାରୀ କହିଲେ ।

"ତା'ହେଲେ ଇଷ୍ଟଦେବଙ୍କୁ ସ୍ମରଣ କର !" ଏହା କହି ଡାକୁ ଛୁରୀ ଉଠାଇଲା । ତତ୍‌କ୍ଷଣାତ୍ ଗଛ ଉପରୁ ଚନ୍ଦ୍ରଭାନୁ ତଳକୁ ଡେଇଁପଡି ଡାକୁ ହାତରେ ଏପରି ଆଘାତ ଦେଲା ଯେ ସେ ଚିତ୍କାର କରି ଛୁରୀ ତଳେ ପକାଇଦେଲା । ବେପାରୀ ଓ ଚନ୍ଦ୍ରଭାନୁ ଦୁହେଁ ମିଶି ଡାକୁକୁ ବାନ୍ଧି ପକାଇଲେ । ବାଟଦେଇ ନଗରୀ-ରକ୍ଷକ ପ୍ରହରୀମାନେ ଯାଉଥିଲେ । ସେମାନେ ଆସି ପହଞ୍ଚିଗଲେ ଓ ଡାକୁକୁ ଧରି ନେଇଗଲେ ।

ସେମାନେ ଚାଲିଯିବା ପରେ ବେପାରୀ ଚନ୍ଦ୍ରଭାନୁ ଆଡ଼େ କଟମଟ କରି ଅନାଇ ପଚାରିଲେ, "ତମେ କିଏ ? ଗଛ ଉପରେ ବସି କ'ଣ କରୁଥିଲ ?"

ଚନ୍ଦ୍ରଭାନୁ ତାଙ୍କ ଗୋଡ଼ ତଳେ ପଡ଼ିଯାଇ ସବୁ କଥା କହିଗଲା ।

ବେପାରୀ କହିଲେ, "ମୁଁ ବୁଝୁଛି, ତମେ ସ୍ୱଭାବରେ ଡାକୁ ନୁହେଁ । ଡାକୁ ହୋଇଥିଲେ, ତମେ ସେ ଅସଲ ଡାକୁ ମୋତେ ମାରି ପକାଇବାଯାଏ ଅପେକ୍ଷା କରିଥାନ୍ତ ଓ ତା'ପରେ ହୁଏତ ତାକୁ ମାରିଥାନ୍ତ ନହେଲେ ତାକୁ ଡରାଇ ତାଠୁଁ ଅଧା ଜିନିଷହାତ କରିଥାନ୍ତ ।"

"ହଁ, ଆଜ୍ଞା, ଯେତେବେଳେ ସେ ଆପଣଙ୍କୁ ନିରସ୍ତ୍ର ଦେଖି ମାରି ପକାଇବାକୁ ବସିଲା, ସେତେବେଳେ ଆଉ ମୁଁ ଥୟ ଧରି ପାରିଲି ନାହିଁ !" ଚନ୍ଦ୍ରଭାନୁ କହିଲା ।

ବେପାରୀଜଣକ ବିବେକୀ ଓ ଦୟାଳୁ ଲୋକ ଥିଲେ । ସେ ଉଭୟ ଚନ୍ଦ୍ରଭାନୁ ଓ ଗୋପାଳକୁ ତାଙ୍କ ଦୋକାନରେ ଚାକିରୀ ଦେଲେ । ଦୁଇ ବନ୍ଧୁ ବିଶ୍ୱସ୍ତ ଭାବରେ କାମ କରି କ୍ରମେ ତାଙ୍କ ବ୍ୟବସାୟରେ ଅଂଶୀଦାର ହେଲେ ।






[ ୪ ]

[ରହସ୍ୟମୟ ଜଳପ୍ରପାତ ଅତିକ୍ରମ କରି ରାଜୁ ଯାଇ ଖାନ-ଦଖାନ ରାଜ୍ୟରେ ପହଞ୍ଚିଗଲା । ସେ ରାଜ୍ୟର ବକ୍ର-ଦାଢ଼ୀବନ୍ତ ପୁରୋହିତ ତା' ଉପରେ ବିରକ୍ତ ହୋଇ ତାକୁ ଧରିବା ପାଇଁ ସିପାହୀମାନଙ୍କୁ ନିର୍ଦ୍ଦେଶ ଦେଲା । ରାଜୁ ଦୌଡ଼ି ପଳାଇ ଯାଉଁ ଯାଉଁ ଗୋଟିଏ ପାହାଡ଼ ଉପରେ ଲୋମହର୍ଷକ ଦୃଶ୍ୟଟିଏ ଦେଖି ରହିଗଲା । ତା'ପରେ···]

ରାଜୁ ଦେଖିଲା, ପାହାଡ଼ ଉପରେ ସୁକୁମାର ବାଳକଟିଏ ସତେ ଅବା ମନ୍ତ୍ରମୁଗ୍ଧ ହୋଇ ଅଚଳ ଭାବରେ ଠିଆ ହୋଇ ରହିଛି । ଗୋଟାଏ ଭୀଷଣାକୃତି ସର୍ପ-ଦାନବ ସେ ବାଳକ ଆଖିରେ ଦୃଷ୍ଟି ନିବଦ୍ଧ କରି ଧିରେ ଧିରେ ତା' ଆଡ଼େ ଅଗ୍ରସର ହେଉଛି ।

"ସର୍ବନାଶ ! ଆଜି କ'ଣ ସର୍ପ-ଦାନବ ଖୋଦ୍ ରାଜପୁତ୍ରଙ୍କୁ ଭକ୍ଷଣ କରିବ ?" ଦୁଇ ପ୍ରହରୀଙ୍କ କଣ୍ଠରେ ଫୁଟିଲା ଆତଙ୍କ ଓ ଆଶ୍ଚର୍ଯ୍ୟ ।

"ତମେ ଦୁହେଁ ତ ବଡ଼ ଅଜବ ପ୍ରହରୀ ! ଯଦି ସର୍ପ-ଦାନବ ତମ ରାଜପୁତ୍ରଙ୍କୁ ଗିଳିଦେବ ବୋଲି ଜାଣୁଛ, ତେବେ ତାଙ୍କୁ ରକ୍ଷା କରିବାକୁ ଆଗଭର ହେଉନ କାହିଁକି ?" ରାଜୁ ନିଜ ତରବାରି ଉପରେ ହାତ ପକାଇ ପ୍ରଶ୍ନ କଲା ।

ମନୋଜ ଦାସ



ପ୍ରହରୀମାନେ ଏମିତ ଭାବରେ ରାଜୁ ଆଡ଼େ ଅନାଇଲେ, ସତେ ଅବା ସେ ଗୋଟାଏ ନିହାତ ଅବାନ୍ତର କଥା କହୁଛି !

ସେତିକବେଳେ ସେଠାରେ ପହଞ୍ଚିଗଲା ଗୋଟିଏ ରଥ । ତାକୁ ଟାଣୁଥିଲେ ଯୋଡ଼ିଏ ବଳିଷ୍ଠ ମଣିଷ । ଯେପରି କ୍ଷିପ୍ର ଗତିରେ ସେମାନେ ଦୌଡ଼ୁଥିଲେ, ତାହା ଦେଖିଲେ ଘୋଡ଼ାମାନେ ବି ଲଜ୍ଜିତ ହୁଅନ୍ତେ ।

"ମହାରାଜ !" ଏତିକି ଉଚ୍ଚାରଣ କରି ପ୍ରହରୀମାନେ ମୁଣ୍ଡ ନୁଆଁଇଲେ । ରାଜା ପାହାଡ଼ ଉପରେ ସର୍ପ-ଦାନବ ଦ୍ୱାରା କବଳିତ ରାଜପୁତ୍ର ଆଡ଼େ ଅନାଇ ଖାଲି ଏତିକି କହିଲେ, "ହାୟ୍ ମୋ ପୁଅ !"

"ମହାରାଜ ! ସର୍ପ-ଦାନବକୁ ଦମନ କରିବା ନିମନ୍ତେ ଏ ପ୍ରହରୀ ଦୁହିଁଙ୍କୁ ଆଦେଶ ଦେଉନାହାନ୍ତି କାହିଁକି ?" ରାଜୁ ଅଧୈର୍ଯ୍ୟ ଭାବରେ ପ୍ରଶ୍ନ କଲା ।

ରାଜା ଥରେ ରାଜୁଆଡ଼େ ବିସ୍ମିତ ଭାବରେ ଅନାଇ ତା'ପରେ ପୁଅ ଉପରେ ଦୃଷ୍ଟି ନିବଦ୍ଧ ରଖି କାନ୍ଦିବାରେ ମନଦେଲେ । ସର୍ପ-ଦାନବ ଓ ରାଜପୁତ୍ର ଭିତରେ ସେତେବେଳେ ମାତ୍ର ଗଜେ ଦୁଇଗଜ ବ୍ୟବଧାନ ।

ରାଜୁ ଲମ୍ଫଦେଇ ପାହାଡ଼ ଉପରକୁ ଉଠିଗଲା । ସେତେବେଳକୁ ସର୍ପ-ଦାନବର ଲହଲହ ଜିଭ ଥରେ ବିଜୁଳି ଭଳି ବାହାରି ଯାଇ ରାଜପୁତ୍ରଙ୍କୁ ଆସ୍ୱାଦ କରିବାକୁ ଚେଷ୍ଟା କରି ସାରିଥାଏ । ଛିଏ ବ୍ୟବଧାନରେ ରାଜପୁତ୍ର ବର୍ତ୍ତି ଯାଇଥିଲେ । ସର୍ପ-ଦାନବର ଜିଭ ଦ୍ୱିତୀୟଥର ନିଷ୍କାସିତ ହେବା ପୂର୍ବରୁ ରାଜୁର ତରବାରି ତା'ର ମୁଣ୍ଡକାଟ କଲା ।

ବନ୍ଧ-ଦାଢ଼ୀବନ୍ତ ସେତିକବେଳେ ରାଜାଙ୍କ ପାଖରେ ଆବିର୍ଭୂତ ହେଲା ।

"ଆରେ ଟୋକା, ତୁ କଲୁ କ'ଣ !" ସେ ଆର୍ତ୍ତନାଦ କଲା ।

"କଲି କ'ଣ ? ରାଜପୁତ୍ରଙ୍କୁ ଗିଳିବାକୁ ଯାଉଥିବା ସର୍ପ-ଦାନବକୁ ମାରିଦେଲି ! ତା' ରକ୍ତରୁ ତ କାହିଁ ଆଉ ଗଣ୍ଡାଏ ନୂଆ ସର୍ପ-ଦାନବ ଜାତ ହେଉ ନାହାନ୍ତି! ଅତଏବ ଆମେ ନିରାପଦ । ରାଜାଙ୍କର କର୍ତ୍ତବ୍ୟ ମୋତେ



ଅଧା ରାଜ୍ୟ ଓ ରାଜକନ୍ୟା ଉପହାର ଦେବା। ତେବେ ମୋର ଅବଶ୍ୟ ସେସବୁ ଲୋଡ଼ା ନାହିଁ!" କହିଲା ରାଜୁ।

"ଟୋକାକୁ ବାନ୍ଧ!" ବଙ୍କ-ଦାଢ଼ୀ ହୁକୁମ୍ ଦେଲା।

"ହଁ, ହଁ, ବାନ୍ଧ।" ରାଜା ବି ସେ ହୁକୁମ୍‌କୁ ସମର୍ଥନ କଲେ ଓ କହିଲେ, "ତେବେ ସାଧାରଣ କାରାଗାରରେ ନରଖି ତାକୁ ଆମ ନଅର ଅଭ୍ୟନ୍ତରବର୍ତ୍ତୀ କାରାକକ୍ଷରେ ରଖ।"

ରାଜପୁତ୍ର ରାଜୁ ପାଖକୁ ଲାଗି ଆସିଲେ। ତାଙ୍କ ଆଖିରେ ଜକେଇ ଥାଏ କୃତଜ୍ଞତାର ଅଶ୍ରୁ। "ଲୁନି ରାଜକୁମାର!" ସ୍ନେହସିକ୍ତ କଣ୍ଠରେ ରାଜୁ ସମ୍ବୋଧନ କଲା। କିନ୍ତୁ ପ୍ରହରୀମାନେ ତତ୍‌କ୍ଷଣାତ୍ ତାକୁ ରାଜପୁତ୍ରଙ୍କଠୁ ଟାଣି ନେଇଗଲେ।

ରାଜୁ ପଛରେ ରାଜା ଓ ବଙ୍କ-ଦାଢ଼ୀ ବୁଲୁଥାନ୍ତି। ସର୍ପ ଦାନବର ଦେହ କେଉଁଠି ପୋତା ହେବ ଓ ତା'ପରେ କେଉଁଠି ବିରାଟ ସ୍ମୃତିସ୍ତମ୍ଭ ନିର୍ମାଣ ହେବ, ସେମାନେ ସେଇକଥା ଆଲୋଚନା କରୁଥାନ୍ତି।

* * *

ନିଶାର୍ଦ୍ଧ। ରାଜୁ ଯେତେ ଚିନ୍ତା କରୁଥାଏ, ତା'କୁ ସେତିକି ବିସ୍ମୟ ଲାଗୁଥାଏ। ସର୍ପ-ଦାନବର ନିଧନରେ ରାଜା ଓ ବଙ୍କଦାଢ଼ୀ ବିଚଳିତ ହେଲେ କାହିଁକି? ରାଜପୁତ୍ରଙ୍କୁ ରକ୍ଷା କରିବା ଅପରାଧ ହେଲା କପରି?

କାରାକକ୍ଷ ଆଗର ସୁଡ଼ଙ୍ଗପଥ ମୃଦୁ ଆଲୋକରେ ଉଦ୍‌ଭାସିତ ହେଲା। କକ୍ଷ ଖୋଲିଦେଲା ଜଣେ ପ୍ରହରୀ। ଆଗରେ ଛିଡ଼ା ହେଲେ ରାଜା।

"ତରୁଣ! ତମେ ମୋ ପୁତ୍ରର ଜୀବନ ରକ୍ଷା କରିଛ। ମୁଁ କୃତଜ୍ଞ। ମୁଁ ତମର ମୃତ୍ୟୁ କାମନା କରୁନାହିଁ।" ସେ କହିଲେ।

"ମହାରାଜ, ଆଉ କିଏ ବା କାହିଁକି ମୋ ମୃତ୍ୟୁ କାମନା କରିବ ସେକଥା ମୁଁ ବୁଝି ପାରୁନାହିଁ।" ରାଜୁ କହିଲା।

"ତରୁଣ, ଇଏ ହେଲା ଜ୍ଞାନ-ବିଜ୍ଞାନ ରାଜ୍ୟ। ଜ୍ଞାନପାଇଁ ଲୋଡ଼ା ଶୃଙ୍ଖଳ। ସେ ସର୍ପ-ଦାନବ ଥିଲା ଶୃଙ୍ଖଳାର ଅଧିଷ୍ଠାତା। ସେ ଶୃଙ୍ଖଳ ମାନି ଦୈନିକ ଗୋଟାଏ ମଣିଷ ଖାଉଥାଏ, ତା'ଠୁ

ଅଧିକ ନୁହେଁ । ସେ କେଉଁଦିନ ଯାହାକୁ ଗ୍ରାସ କରିବ, ସେଇଟା ତା'ର ମର୍ଜି । ଆଜି ସେ ମୋ ପୁଅକୁ ଖାଇବାକୁ ଉଦ୍ୟତ ହେଲା ବୋଲି ମୁଁ କିପରି ସେଥିରେ ବାଧା ଦେବି ? ରାଜା ହିସାବରେ ଶୃଙ୍ଖଳାର ଦୃଷ୍ଟାନ୍ତ ରଖିବା ବରଂ ମୋର ପ୍ରଥମ କର୍ତ୍ତବ୍ୟ ।" ରାଜା ବୁଝାଇ ଦେଲେ ।

"ମହାରାଜ, ସର୍ପ-ଦାନବ ଶୃଙ୍ଖଳାର ଅଧିଷ୍ଠାତା ହେଲା କିପରି ?"

"ସେଇଟା ଅବଶ୍ୟ ଗୋପନ କଥା । କିନ୍ତୁ ତମକୁ କହି ଦେଉଛୁ । ସର୍ପ-ଦାନବ ଛୁଛା ସର୍ପ-ଦାନବ; ତା'ଠୁଁ ବେଶି କିଛି ନୁହେଁ । କିନ୍ତୁ ଶୃଙ୍ଖଳାର ନିୟାମକ ଭାବରେ ଯାହାକୁ ହେଲେ ଲୋକେ ମାନିବା ଗୃହି । ନହେଲେ ସେମାନେ ବିଶୃଙ୍ଖଳ ହୋଇଯିବେ । ସେ ନିୟାମକ ଯେତେ ଭୟଙ୍କର ହେବ, ଲୋକେ ତାକୁ ସେତିକି ବେଶି ମାନିବେ ।"

"ମହାରାଜ! ରଥ ମହିଷ ନଟାଣି ଘୋଡ଼ା ଟାଣିବା ଉଚିତ, ଏତିକି ଜ୍ଞାନ ବି ତ ଆପଣ-ମାନଙ୍କର ନାହିଁ । ଆଉ ଏଇଟା କେଉଁ ଦୃଷ୍ଟିରୁ ଜ୍ଞାନବିଜ୍ଞାନ ରାଜ୍ୟ ?" ପ୍ରଶ୍ନ କଲା ରାଜୁ ।

ରାଜା ରାଜୁର ପିଠି ଥାପୁଡ଼େଇ ଦେଇ କହିଲେ, "ତରୁଣ, ଯେଉଁମାନଙ୍କୁ ତମେ ମହିଷ ରୂପରେ ଦେଖିଲ, ସେମାନେ ବାସ୍ତବରେ ଘୋଡ଼ା । ଆମେ ସେମିତି ଗୁଡ଼ାଏ ଘୋଡ଼ାଙ୍କୁ ମହିଷ ଓ ଗୁଡ଼ାଏ ମହିଷଙ୍କୁ ଘୋଡ଼ାରେ



ପରିଣତ କରି ପାରିଛୁଁ । ଏଥିରୁ ଆମ ଜ୍ଞାନ ବିଜ୍ଞାନର କରାମତି ବୁଝୁଛ କି ?"

"ବୁଝୁଛି !" ରାଜୁ ଦୀର୍ଘନିଃଶ୍ୱାସ ଛାଡ଼ିଲା ।

"ବୁଝୁଛ ?" ରାଜା ଥଟ୍ଟାଳିଆ ଭାବରେ ଜେରା କଲେ, "କ'ଣ ବୁଝୁଛ ?"

"ବୁଝୁଛି ଯେ ଏ ଧରଣର ଜ୍ଞାନବିଜ୍ଞାନର ଅଧିଷ୍ଠାତା ସର୍ପ-ଦାନବହିଁ ହେବା ଉଚିତ !" ରାଜୁ କଣ୍ଠସ୍ୱର ଟାଣ କରି କହିଲା ।

ରାଜା ଅସ୍ୱସ୍ତି ଅନୁଭବ କଲେ । ରାଜୁକୁ ସେମାନଙ୍କର ଆହୁରି ଅଧିକ କିଛି କରାମତି ଦେଖାଇବା ନିମନ୍ତେ ନଅରର ଛାତ ଉପରକୁ ନେଇଗଲେ । ଛାତର ଗୋଟିଏ କୋଣରେ ଥିଲା ଏକ ଉଜ୍ଜ୍ୱଳ ଶୁଭ୍ର ଗମ୍ବୁଜ । ତହିଁ ଉପରେ



ଥିଲା କିଛି ଲାଲ ଅଂଶ । ରାଜା ସେହି ଅଂଶ ଉପରେ ତିନିଥର ହାତ ବାଡ଼େଇଦେଲେ । ଲାଲ ଅଂଶ ଅପସରି ଯାଇ ଦେଖାଦେଲା ଏକ ଦ୍ୱାର ।

ରାଜାଙ୍କୁ ଅନୁସରଣ କଲା ରାଜୁ ।

"ଏହି ଗମ୍ବୁଜ ଭିତରୁ ରାଜ୍ୟର ଯେଉଁଠି ଯାହା ହେଉଛି ସବୁ ସ୍ପଷ୍ଟ ଦେଖି ହେବ ।" ରାଜା କହିଲେ ଓ ଗମ୍ବୁଜର ଏକ ସ୍ୱଚ୍ଛ ଅଂଶ ଦେଇ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳ ପ୍ରତି ରାଜୁର ଦୃଷ୍ଟି ଆକର୍ଷଣ କଲେ । ରାଜୁ ଦେଖିଲା ଶତ ଶତ ଉଜ୍ଜ୍ୱଳ ଆଲୋକ ତଳେ ଅସଂଖ୍ୟ ନରନାରୀ କର୍ମରତ ।

"ସେମାନେ କ'ଣ କରୁଛନ୍ତି ?" ରାଜୁ ପଚାରିଲା ।

"କରୁଛନ୍ତି ଅନେକ ଧରଣର କାମ । ବାମକୁ ଅନାଅ । ସେଠାରେ ବଶିଷ୍ଟ ଗଣିତଜ୍ଞମାନେ ଏମିତି ଏକ ପଦ୍ଧତି ପ୍ରସ୍ତୁତ କରୁଛନ୍ତି, ଯାହା ଦ୍ୱାରା ଆମ ଦେଶରେ କେତେ ସଂଖ୍ୟକ ବାଲିକଣା ରହିଛି, ତା'ର ସଠିକ୍ ହିସାବ ସମ୍ଭବ ହେବ । ତା'ପରେ..."

"ମହାରାଜ, ଏ ଜ୍ଞାନର ପ୍ରୟୋଜନ ?"

"ଜ୍ଞାନ ହେଲା ବଳ । ଆମର ଜ୍ଞାନ-ଶସ୍ତ୍ରା-ଗାରରେ ସୁରକ୍ଷିତ ଅସଂଖ୍ୟ ଜ୍ଞାନରୁ କିଏ କେତେବେଳେ ହେଲେ କାମରେ ଲାଗିଯିବ । ତମକୁ ଗୋଟାଏ ଦୃଷ୍ଟାନ୍ତ ଦେଉଛି । ହେଇ ସେପାଖରେ ସେ କୋଠା ଆଡ଼େ ଅନାଅ । ସେଠି ବୈଜ୍ଞାନିକମାନେ ଗୋଟାଏ ଅପୂର୍ବ ମହତ୍ କାମ କରୁଛନ୍ତି ।" ରାଜା କହିଲେ ।

"ସତେ ? ଯେଉଁ ଧରଣର ଶୃଙ୍ଖଳା ଓ ଶକ୍ତି ଆପଣମାନେ ହାସଲ୍ କରିଛନ୍ତି, ସେଥିରେ ମହତ୍ କିଛି ହେବା ଉଚିତ୍ । କାମଟି କ'ଣ ଜାଣିପାରେଁ ?" ରାଜୁ କୌତୁହଳ ପ୍ରକାଶ କଲା ।

"ଭବିଷ୍ୟତରେ ଆମେ ଆକାଶର ଯେ କୌଣସି ନକ୍ଷତ୍ରକୁ ଚୁର୍ମାର୍ କରିଦେଇ ପାରିବୁଁ !"

"ଓଃ, ଏଇଟା ମହତ୍ କାମ ? କେଡ଼େ ଭୟଙ୍କର ମୂର୍ଖତା !" ରାଜୁ ଉତ୍ତେଜିତ ଭାବରେ କହିଲା ।

"ଚୁପ୍ ପଡ଼ !" ରାଜା ବିରକ୍ତ ହେଲେ ।



"କାହିଁକି ଭିନ୍ନ ପଡ଼ନ୍ତି ? ସୁଦୂର ଆକାଶରେ ମିଞ୍ଜି ମିଞ୍ଜି କରୁଥିବା ସେ ଭିନ୍ନ ଭିନ୍ନ ନକ୍ଷତ୍ର-ମାନେ ଆପଣଙ୍କର କ'ଣ ହାନି କରିଛନ୍ତି ଯେ ଆପଣ ସେଥିରୁ କେତୋଟିକୁ ଧ୍ୱଂସ କରି-ଦେବାକୁ ଏତେ ବ୍ୟଗ୍ର ?"

"ସେମାନେ ମିଞ୍ଜି ମିଞ୍ଜି କରୁଛନ୍ତି ବୋଲି ଯେ ନିରୀହ, ତାହା ନୁହେଁ, ଆଉ ସେମାନଙ୍କୁ ଯେତେ ଭିନ୍ନ ଭାବୁଛ, ସେମାନେ ତାହା ବି ନୁହନ୍ତି। ସେମାନେ ବିରାଟ ଗ୍ରହମାଳ। ସେଥିରେ ଆମଠୁଁ ବହୁତ ଅଧିକ ବଳବାନ ଲୋକ ଥିବା ସମ୍ଭବ। ହଠାତ୍ ଯଦି ସେମାନେ ଦିନେ ଆମ ଆଡ଼କୁ ଖେପି ଆସିବେ ?" ରାଜା ଓଲଟା ପ୍ରଶ୍ନ କଲେ।

"ମହାରାଜ, ସେମାନେ ଯଦି ଆସିବେ, ତେବେ ସେମାନେ ପ୍ରଚୁର ସହାନୁଭୂତି ଓ ନିରୀହ ଅନୁସନ୍ଧିତ୍ସା ଦ୍ୱାରା ଅନୁପ୍ରାଣିତ ହୋଇ ନ ଆସିବେ ବୋଲି କାହିଁକି ଭାବିଲେ ? ଆପଣମାନେ ସବୁ କାମ କାହିଁକି ଭୟ ଦ୍ୱାରା ପ୍ରେରିତ ହୋଇ କରୁଛନ୍ତି ?" ରାଜୁ ପଚାରିଲା।

"ସେଥିରେ ଉପକାର ମିଳେ। ଲୋକେ ଏକତାବଦ୍ଧ ହୋଇ ରହନ୍ତି, ତଥା ଚୁପ୍ ରହନ୍ତି।" ରାଜା ଟିକିଏ ଦୋଦୋପାଞ୍ଚ କରି ଉତ୍ତର ଦେଲେ।

"ସେଭଳି ଏକତା ଓ ନୀରବତାର ମୂଲ୍ୟ କ'ଣ ? ଲୋକେ ଘୋର ତାକୁ ଭୟରେ ହି ପରସ୍ପର କାବୁଡ଼ି ଧରି ରହନ୍ତି ! ସେଇଟା ଏକତା ? ଆଚ୍ଛା, ଆଉ ଗୋଟାଏ ପ୍ରଶ୍ନ। ବର୍ତ୍ତମାନ ରାତି। ଆପଣଙ୍କ ଲୋକେ ଶୋଇବା ଉଚିତ ନୁହେଁ ?"

"ଚିନ୍ତା କରନାହିଁ। ଆମର ବିଜ୍ଞାନ ଲୋକଙ୍କୁ ନିଦ ଭୁଲାଇ ଦେବାର ଉପାୟ ଆବିଷ୍କାର କରିପାରିଛି। ଯିଏ ବିନା ନିଦରେ ଦଶବର୍ଷ ବିତାଇପାରେ, ତାକୁ 'ସର୍ପ-ଦାନବ ପଦକ' ଦେଇ ଅଭିନନ୍ଦିତ କରାଯାଏ।"

"ନିଦ ଭୁଲାଇ ଦେବାର ଉପାୟ ? ସେଥିରେ ସେମାନଙ୍କ ସ୍ୱାସ୍ଥ୍ୟହାନି ହୁଏ ନାହିଁ ?" ରାଜୁ ପ୍ରଶ୍ନ କଲା। ସେ ଉତ୍ତେଜିତ ନହେଲେ ବି ତା' କଣ୍ଠସ୍ୱରରେ ଥିଲା ବେଦନା।

"ନିଦ୍ରାହୀନତାର କୁପ୍ରଭାବକୁ ପ୍ରତିହତ କରିବା ନିମନ୍ତେ ଆମ୍ଭେମାନେ ଗୋଟାଏ ସୁଦୃ

ଉପାୟ ବାହାର କରନ୍ତୁ । ହେଇଟି, ସେଆଡ଼େ ଅନାଅ ।" ରାଜା ଶମ୍ଭୁଙ୍କ ହାତର ଅନ୍ୟ ଏକ ସ୍ୱଚ୍ଛ ଅଂଶ ଭିତର ଦେଇ ନଗରର ଆଉ ଏକ ଅଞ୍ଚଳ ଆଡ଼େ ରାଜୁର ଦୃଷ୍ଟି ଆକର୍ଷଣ କଲେ ଓ କହିଲେ, "ବର୍ତ୍ତମାନ ଏକ ଢାନ୍ଦ ବୋବାଳ ଅଧିବେଶନ ଆରମ୍ଭ ହେବାକୁ ଯାଉଛି । ତେବେ ଆଉ ବୋଧହୁଏ ଅସଲ ଅଧିବେଶନ ପୂର୍ବରୁ ଆମ ପୁରୋହିତ କିଛି କହିବେ ।"

"ଢାଢ ବୋବାଳ ଅଧିବେଶନ ?"

ରାଜା ସଗର୍ବ ହସ ହସି କହିଲେ, "ନାଦ ଛାଡ଼ଦେବା ଦ୍ୱାରା ଶରୀରରେ ଓ ମନରେ ଯେଉଁ ଖରାପ ପ୍ରତିକ୍ରିୟା ହୁଏ, ଏକତ୍ର ହୋଇ ବହେ କନ୍ଦାକଟା କରିଦେଲେ ସେ ପ୍ରତିକ୍ରିୟାର ଅବସାନ ହୋଇଯାଏ ।"

ରାଜୁ ଦେଖୁଥାଏ ଗୋଟାଏ ପ୍ରଶସ୍ତ ପ୍ରେକ୍ଷାଳୟ । ମଞ୍ଚର ପଛଭୂମିରେ ସର୍ପ-ଦାନବର ପ୍ରତିକୃତି—ସତସତିଆ ସର୍ପ-ଦାନବ ଅପେକ୍ଷା ବହୁ ଅଧିକ ଗୁଣ ଭୟଙ୍କର । ପ୍ରେକ୍ଷାଳୟ ଭର୍ତ୍ତି ଲୋକ; କିନ୍ତୁ ସମସ୍ତେ ନୀରବରେ ମୁଣ୍ଡ ପୋତି ବସିଥାନ୍ତି ।

ମଞ୍ଚ ଉପରକୁ ଉଠିଯାଇ ବନ୍ଦାଢ଼ୀ ଭାଷଣ ଆରମ୍ଭ କଲା : "ନାଗରିକଗଣ ! ଆମ ପ୍ରିୟ ସର୍ପ-ଦାନବର ଆକସ୍ମିକ ନିଧନ ବିଷୟ ଆପଣମାନେ ଅବଗତ ଅଛନ୍ତି । ତାଙ୍କ ଘାତକ ଯେ ମାନବରୂପୀ ସୈତାନ୍, ଏହା କହିବା ବାହୁଲ୍ୟ ମାତ୍ର । ଆମର କୌଣସି ଭୀଷଣ ଶତ୍ରୁ ତାକୁ ପ୍ରେରଣ କରିଛି । ଯେତେବେଳେ ସର୍ପ-ଦାନବ ରାଜପୁତ୍ରଙ୍କୁ ଆହାର କରିବ, ଠିକ୍ ସେତିକବେଳେ ସେ ମହାଧୂର୍ତ୍ତ ଘାତକ ତାକୁ ହତ୍ୟା କଲା । ଏପରି କରି ସେ ରାଜାଙ୍କ ସହାନୁଭୂତି ପାଇବାର କଳ୍ପନା କରିଥିଲା । ତେବେ ସେ ବର୍ତ୍ତମାନ ବନ୍ଦୀ ।"

ରାଜୁ କ୍ରୋଧରେ ଥରି ଉଠି ରାଜାଙ୍କ ଆଡ଼େ ଅନାଇ ପ୍ରଶ୍ନ କଲା, "ମହାରାଜ, ଏ ପ୍ରଚଣ୍ଡ ମିଥ୍ୟାବାଦୀକୁ ଆପଣ ସହ୍ୟ କରନ୍ତି ?"

ରାଜା ନିସ୍ତବ୍ଧ ଦେଖାଗଲେ । (କ୍ରମଶଃ)





# ମାନବ ଓ ଦାନବ

ନିଶା ଗରଜୁଥାଏ । ଥୁହାକୁ ଥୁହା ଶୀତଳ ପବନ ସାଙ୍ଗକୁ ବର୍ଷା ହେଉଥାଏ । ଗଛଲତା ଭିତରୁ ଆସୁଥାଏ ସାଇଁ ସାଇଁ ଶବ୍ଦ । ବଜ୍ରଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ଼ି ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ଥରେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ବୃକ୍ଷଟି ପାଖକୁ ଲେଉଟିଗଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । କିନ୍ତୁ ତା'ପରେ ତାକୁ କାନ୍ଧରେ ପକାଇ ସେ ଶୂନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା, ତୁମେ ଏ ଦୁର୍ଯୋଗପୂର୍ଣ୍ଣ ରାତିରେ ଯେ ଏଭଳି କଷ୍ଟ ପାଉଛ, ଏହା ପଛରେ ନିଶ୍ଚୟ କୌଣସି

## ବେତାଳ କଥା



ବିଶେଷ କାରଣ ରହିଛି । ହୁଏତ କେହି ତୁମକୁ କୌଣସି ବଡ଼ ଧରଣର ପ୍ରତିଶ୍ରୁତି ଦେଇଛି । କିନ୍ତୁ ଥରେ ଥରେ ପ୍ରତିଶ୍ରୁତି ଦେଇ ତାହା ଲୋକେ ରକ୍ଷା ନକରିବାର ଦୃଷ୍ଟାନ୍ତ କମ୍ ନୁହେଁ । ମୋ ବକ୍ତବ୍ୟକୁ ସ୍ପଷ୍ଟ କରିଦେବା ନିମନ୍ତେ ଗୋଟାଏ କାହାଣୀ କହୁଛି, ମନଦେଇ ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

ବେତାଳ କହିଲା : ମଗଧଦେଶର ରାଜା ମାଧବସେନ ଥରେ ଛଦ୍ମବେଶ ପକାଇ ପ୍ରଜାଙ୍କ ଅବସ୍ଥା ଦେଖିବା ନିମନ୍ତେ ବୁଲୁଥିଲେ । ରାଜଧାନୀଠୁଁ ଅନେକ ଦୂର ଯିବା ପରେ ସେ ଗୋଟିଏ ଗାଁରେ ପହଞ୍ଚିଲେ । ସେ ଗାଁର ହାଲ୍‌ଚାଲ ଦେଖିସାରି ସେ ଟିକିଏ ଦୂରରେ ରହିଥିବା ଅନ୍ୟ ଗାଁକୁ ଯିବା ନିମନ୍ତେ ଗୋଟିଏ ନିର୍ଜନ ପଡ଼ିଆ ଅତିକ୍ରମ କଲାବେଳେ ତାଙ୍କ ଆଖିରେ ପଡ଼ିଲା ଏକ ଅଦ୍ଭୁତ ଦୃଶ୍ୟ । ସେ ଦେଖିଲେ ଗୋଟାଏ କୁକୁର କବଳରୁ ଖସି ଆସି ବିଲେଇଟିଏ ସ୍ୱାଭାବିକ ଭାବରେ ଯାଉଁ ଯାଉଁ ହଠାତ୍ ଗୋଟାଏ ଗଛମୂଳରେ ବିକଟ ରଡ଼ି ଛାଡ଼ି ପ୍ରାଣମୂର୍ଚ୍ଛା ପଳାଇଲା । ରାଜା ଆଶ୍ଚର୍ଯ୍ୟ ହେଲେ । ସେ ଗଛମୂଳରେ ଏଭଳି ଭୟଙ୍କର ଚିଜ କ'ଣ ଅଛି ବୋଲି ଅନାଇ ସେ ଯାହା ଦେଖିଲେ, ସେଥିରେ ତାଙ୍କ ଆଶ୍ଚର୍ଯ୍ୟ ଦୁଇଗୁଣ ବଢ଼ିଗଲା । ଗଛମୂଳରେ ଶୋଇଥିଲା ଗୋଟାଏ ବଡ଼ ମୂଷା ।

ମୂଷାକୁ ଦେଖି ବିଲେଇ ଛାନିଆ ହେବ, ଏକଥା କିଏ ବା କଳ୍ପନା କରନ୍ତା ? ରାଜା ଅବାକ୍ ହୋଇ ମୂଷାଟିକୁ ଲକ୍ଷ୍ୟ କଲେ । "ଯେଉଁ ମୂଷାକୁ ଦେଖି ବିଲେଇ ପଳାଇଯାଏ, ସେ ମୂଷାକୁ ଜୀବନରେ ରଖିବା ଠିକ୍ ନୁହେଁ ।" ରାଜା ଏହା ଭାବି ନିଜ ତରବାରି ବାହାର କଲେ । ପୁଣି ଭାବିଲେ, ଯେଉଁ ତରବାରିରେ ସେ ଭୀଷଣ ଶତ୍ରୁମାନଙ୍କ ପ୍ରାଣ ନେବା କଥା, ଗୋଟାଏ ସାମାନ୍ୟ ମୂଷା ଉପରେ ସେ ତାହା ପ୍ରୟୋଗ କରିବେ ? ଏହା ଭାବି ସେ ଖଣ୍ଡିଏ ପଥର ଉଠାଇ ତାହା ଦ୍ୱାରା ମୂଷକୁ ଆଘାତ କରିବାକୁ ପ୍ରସ୍ତୁତ ହେଲେ । ସେତିକିବେଳେ ରାଜ୍ୟର ଗୋଟାଏ ନିୟମ ତାଙ୍କର ମନେ ପଡ଼ିଲା: କୌଣସି ନିଦ୍ରିତ ପ୍ରାଣୀକୁ ଆଘାତ

କରିବା ଅନୁଚିତ । ସେ ତେଣୁ ମୂଷା ପାଖକୁ ଯାଇ ତାକୁ ଗୋଡ଼ରେ ଠେଲିଦେଲେ ।

ସଙ୍ଗେ ସଙ୍ଗେ ମୂଷାଟି ଗୋଟିଏ ମଣିଷ ରୂପ ଧରି ଠିଆହେଲା ଓ ହସିଲା ।

ରାଜା ଚମକି ପଛ ପଛକୁ ଘୁଞ୍ଚିଗଲେ ଓ ନିଜ ତରବାରି ଉପରେ ହାତ ପକାଇଲେ । ଲୋକଟି ପୁନର୍ବାର ହସିଲା ଓ କହିଲା, "ଭୟ ନାହିଁ । ତମର କୌଣସି କ୍ଷତି କରିବାର ଉଦ୍ଦେଶ୍ୟ ମୋର ନାହିଁ ।"



"ତମେ ମଣିଷ, କିନ୍ତୁ ମୂଷା ରୂପ ଧରି ଶୋଇଥିଲ ପରା! ଏହା ତ ବଡ଼ ବିଚିତ୍ର!" ରାଜା କହିଲେ ।

"କୌଣସି ମଣିଷ ପକ୍ଷରେ କ'ଣ ମୂଷା ରୂପ ନେବା ସମ୍ଭବ ? ମୁଁ ରାକ୍ଷସରାଜ ପ୍ରଚଣ୍ଡ । ତମେ ତ ଜାଣ, ରାକ୍ଷସମାନେ ଅନେକ ପ୍ରକାର ରୂପ ଗ୍ରହଣ କରି ପାରନ୍ତି । ମୁଁ ପ୍ରଥମେ ମଣିଷ ରୂପ ଗ୍ରହଣ କରି ଅନ୍ୟ ଏକ ସ୍ଥାନରେ ଶୋଇଥିଲି । ଚୋରମାନେ ମୋତେ ଜଣେ ବିଦେଶୀ ମନେ କରି ଲୁଣ୍ଠନ କରିବାକୁ ଚେଷ୍ଟା କଲେ । ଆଉ ଏକ ସ୍ଥାନରେ ମୋତେ ବିଦେଶୀ ବେପାରି ଭାବି ଏ ରାଜ୍ୟର କେତେକ ଠକ ହରକତ କଲେ । ମୁଁ ଦେଖିଲି ମୂଷା ଭଳି ପ୍ରାଣୀଟିଏ ହୋଇପଡ଼ି ରହିଲେ ମୁଁ ନିରାପଦ ରହିବି ।" ରାକ୍ଷସ କହିଲା ।

"ନା, ରାକ୍ଷସରାଜ । ମୁଁ ସିନା ତମକୁ ମାରିଲି ନାହିଁ, କିନ୍ତୁ ଜଣେ ସାଧାରଣ ଲୋକ ହାବୁଡ଼ରେ ପଡ଼ିଥିଲେ ତମେ ଅବଶ୍ୟ ମରିଥାନ୍ତ । ସେକଥା ଛାଡ଼ । ତମେ ରାକ୍ଷସ । ଚୋର ଓ ଠକମାନେ ତମକୁ ହରକତ କଲେ, ଅଥଚ ତମେ କିଛି କରିପାରିଲ ନାହିଁ କିପରି ?" ରାଜା ପଚାରିଲେ ।

"ଆମେ ରାକ୍ଷସମାନେ ମଣିଷ ରୂପ ଧରିବା ମାତ୍ରେ ଆମର ବଳ ମଣିଷ ଭଳି ହୁଏ, ରାକ୍ଷସର ବଳ ପରାକ୍ରମ ସେତେବେଳେ ରହେ-ନାହିଁ ।" ରାକ୍ଷସ ବୁଝାଇଦେଲା ଓ ରାଜାଙ୍କ ପରିଚୟ ମାଗିଲା । ରାଜା ନିଜର ପରିଚୟ ଦେଲେ । ରାକ୍ଷସ ଖୁସି ହୋଇ ତାଙ୍କୁ ଅଭିବାଦନ କଲା ।

"ତମେ କାହିଁକି ମୋ ରାଜ୍ୟକୁ ଆସିଛ ?" ରାଜା ପଚାରିଲେ ।



"ଗୋଟାଏ ବିଶେଷ କାରଣରୁ। ଆମେ ରାକ୍ଷସମାନେ ମଣିଷ ଖାଇପାରୁଁ। କିନ୍ତୁ ବହୁ ବର୍ଷ ହେଲା ଆମ ରାକ୍ଷସ ରାଜ୍ୟରେ ଗୋଟାଏ ନିୟମ ପ୍ରଚଳନ ହୋଇଛି। ସେ ନିୟମ ଅନୁସାରେ କୌଣସି ନିରସ୍ତ୍ର ମଣିଷକୁ ଆମେ ରାକ୍ଷସମାନେ ମାରି ପାରିବା ନାହିଁ। ଆତ୍ମରକ୍ଷା ପାଇଁ ମଧ୍ୟ ମଣିଷ ମାରିବା ଆମ ପକ୍ଷରେ ନିଷିଦ୍ଧ। ପୁଣି, ଅନ୍ୟ କୌଣସି ଜାନୁଆର ଯଦି ମଣିଷଟିଏ ମାରିଥିବ, ସେ ମଣିଷକୁ ଆମେ ଖାଇବା କଥା ନୁହେଁ। କିନ୍ତୁ ମୁଁ ଦେଖୁଛି, କେଇଦିନ ହେଲା ଆମର କେତେକ ରାକ୍ଷସ ଗଣ୍ଡା ଗଣ୍ଡା ମଣିଷ ଆଣି ଖାଉଛନ୍ତି। ସେମାନଙ୍କ ରାଜା ହିସାବରେ ମୁଁ ଯେତେବେଳେ ସେମାନଙ୍କୁ ସେ ବିଷୟରେ ପ୍ରଶ୍ନ କରେଁ, ସେମାନେ କହନ୍ତି କି ସେମାନେ ସଦ୍ୟ ମୃତ ମଣିଷମାନଙ୍କୁ ସଂଗ୍ରହ କରି ନେଇଯାଉଛନ୍ତି। ମୁଁ ଦେଖିଲି, ସେ ମଣିଷମାନେ ବୁଢ଼ା ନୁହନ୍ତି। ତେଣୁ ମଲେ କାହିଁକି? ରାକ୍ଷସମାନେ କହୁଛନ୍ତି କି ସାମ୍ପ୍ରଦାୟିକ ଦଙ୍ଗା, ବସ୍ତି ବସ୍ତି ଭିତରେ ମାଡ଼ପିଟ ଇତ୍ୟାଦିରେ ଏତେ ଲୋକ ମରୁଛନ୍ତି ଯେ ଦଙ୍ଗା ହାଙ୍ଗାମା ଭିତରେ ଗୁଡ଼ାଏ ମୃତଦେହ ଉଠାଇ ନେଇଗଲେ ବି କେହି ଜାଣିପାରୁ ନାହାନ୍ତି। ଏହା କେତେଦୂର ସତ୍ୟ, ସେହିକଥା ବୁଝିବା ପାଇଁ ମୁଁ ଆସିଛି।" ରାକ୍ଷସ-ରାଜ ପ୍ରଚଣ୍ଡ କହିଲା।

"ତମ ଅନୁସନ୍ଧାନରୁ କ'ଣ ବୁଝିଲ?" ରାଜା ପଚାରିଲେ।

"ଅନେକ କଥା ବୁଝିଲି। ଆମ ରାକ୍ଷସମାନେ ଯାହା କହୁଥିଲେ, ତାହା ସତ୍ୟ। ସଙ୍ଗେ ସଙ୍ଗେ ଏହା ବି ସତ୍ୟ ଯେ ଲୋକଙ୍କ ଉପରେ ଯେଉଁମାନେ ରାଜୁତି କରୁଛନ୍ତି, ସେମାନଙ୍କ ଭିତରେ ମାନବଗୁଣ ଅପେକ୍ଷା ଦାନବ ଗୁଣ ଅଧିକ। ସେମାନେ ସ୍ୱାର୍ଥପର, ଭୀରୁ ଓ ଦୁର୍ବଳ।" ରାକ୍ଷସ କହିଲା।

ରାଜା ସଙ୍ଗେ ସଙ୍ଗେ ନିଜ ତରବାରି ଉପରେ ହାତ ପକାଇ କହିଲେ, "ରାକ୍ଷସ-ରାଜ! ମୁଁ ଯେ ସ୍ୱାର୍ଥପର ବା ଭୀରୁ ନୁହେଁ, ଏକଥା ଅବଶ୍ୟ ସଙ୍ଗେ ସଙ୍ଗେ ପ୍ରମାଣ କରିଦେଇ ପାରିବି ନାହିଁ। କିନ୍ତୁ ମୁଁ ଯେ ଦୁର୍ବଳ ନୁହେଁ,

ଏକଥା ତୁମ ସହ ଯୁଦ୍ଧ କରି ପ୍ରମାଣ କରିଦେବି । ଆସ, ତୁମେ ତୁମ ରାକ୍ଷସ ରୂପ ଧାରଣ କର ।" ରାଜା କହିଲେ ।

ରାକ୍ଷସ କହିଲା, "ରାଜା, ମୁଁ ରାକ୍ଷସ ରୂପ ଧାରଣ କଲେ କୌଣସି ମଣିଷ ମୋତେ ପରାସ୍ତ କରିପାରିବାର ପ୍ରଶ୍ନ ଉଠୁନାହିଁ । ମୁଁ ଏହିପରି ମଣିଷ ଭାବରେ ତୁମ ସହ ଲଢ଼େଇ କରିପାରେଁ । ମଣିଷ ମଣିଷ ଭିତରେ ଲଢ଼େଇ ହେଲେ ସିନା ରାକ୍ଷସମାନଙ୍କର ଲାଭ ! ତମେ ଯଦି ମୋତେ ହରାଇଦେବ, ତେବେ ତୁମେ ମୋତେ ଯାହା କରିବାକୁ କହିବ, ତାହା କରିବି ।"

ରାଜା ଓ ରାକ୍ଷସ ଭିତରେ ଯୁଦ୍ଧ ହେଲା । ରାଜା ଅକ୍ଳେଶରେ ମଣିଷ-ରୂପୀ ରାକ୍ଷସକୁ ହରାଇଦେଲେ । ରାକ୍ଷସ ସଙ୍ଗେ ସଙ୍ଗେ ମଣିଷ ରୂପ ତ୍ୟାଗ କରି ରାକ୍ଷସ ରୂପ ନେଲା । ସେ ଭୀଷଣ ଚେହେରା ଦେଖି ରାଜା ଡରିଗଲେ ।

"ନା, ନା, ଭୟ କରିବାର କୌଣସି କାରଣ ନାହିଁ ।" ରାକ୍ଷସ ଏତିକି କହି ରାଜାଙ୍କ ପାଖକୁ ଘୁଞ୍ଚି ଆସିଲା ।

ରାଜା ଆଶ୍ୱସ୍ତ ହେଲେ ।

ରାକ୍ଷସ କହିଲା, "ରାଜା ! ତମେ କୁଶଳୀ ଯୋଦ୍ଧା, ସନ୍ଦେହ ନାହିଁ । ତୁମେ ମୋଠୁଁ କି ପ୍ରକାର ସହାୟତା ଚାହୁଁଛ, କୁହ । ମୁଁ ଦେବି ।"

ରାଜା ଖୁସି ହୋଇଗଲେ ଓ କହିଲେ, "ମୁଁ ସାରା ପୃଥିବୀର ସବୁ ରାଜ୍ୟ ଜୟ କରି ରାଜରାଜେଶ୍ୱର ହେବି । ଉଦ୍ଦେଶ୍ୟ ହେଲା,



ତାହା ହ୍ୱାର ମୁଁ ପୃଥିବୀରେ ଶାନ୍ତି ସ୍ଥାପନ କରିବ । କୌଣସି ରାଜା ସହ କୌଣସି ରାଜାର ଯୁଦ୍ଧ ହେବ, ସେକଥା ମୁଁ କରାଇ ଦେବ ନାହିଁ ।"

ହଠାତ୍ ରାକ୍ଷସ ଅଟ୍ଟହାସ୍ୟ କଲା ଓ କହିଲା, "ରାଜା! ମୁଁ ଦୁଃଖିତ । ମୋ ପ୍ରତିଶ୍ରୁତି ମୁଁ ପାଳନ କରିବ ନାହିଁ ।"

"କାହିଁକି?" ରାଜା ପ୍ରଶ୍ନ କଲେ ।

ରାକ୍ଷସ ପୁଣି ଅଟ୍ଟହାସ୍ୟ କରି ତା'ପରେ ନିଜକୁ ଗୋଟାଏ ପକ୍ଷୀରେ ପରିଣତ କରି ଉଡ଼ି ଚାଲିଗଲା ।

ବେତାଳ ଟିକିଏ ଚୁପ୍ ରହି ତା'ପରେ କଠୋର କଣ୍ଠରେ ପ୍ରଶ୍ନ କଲା, "ରାଜା! ରାକ୍ଷସ କାହିଁକି ତା'ର ପ୍ରତିଶ୍ରୁତି ଭଙ୍ଗ କଲା? ସେ ଅଟ୍ଟହାସ୍ୟବା କଲା କାହିଁକି? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, "ରାକ୍ଷସ ନିଜ ଅନୁଭୂତ କଥା କିପରି ଭୁଲନ୍ତା? ସେ ମଣିଷ ରୂପେ ମଗଧକୁ ଆସି ଥରେ ଚୋରଙ୍କ ହାବୁଡ଼ରେ ଓ ଆଉ ଥରେ ଠକଙ୍କ ହାବୁଡ଼ରେ ପଡ଼ିଥିଲା । ଯେଉଁ ରାଜା ନିଜ ରାଜ୍ୟରେ ଏସବୁ ଅଶାନ୍ତିର ହେତୁ ଦୂର କରି ପାରିନାହିଁ, ଯେଉଁ ରାଜ୍ୟରେ ଦଙ୍ଗା ହାଙ୍ଗାମା ଲାଗି ରହିଛି ବୋଲି ରାକ୍ଷସମାନେ ମଣିଷ ଆହାର ପାଉଛନ୍ତି, ସେ ରାଜ୍ୟର ରାଜା ପୃଥିବୀରେ ଶାନ୍ତି ସ୍ଥାପନ କରିବ ବୋଲି ନିଜେ କହିବା ଆତ୍ମଶ୍ଳାଘା ଛଡ଼ା ଆଉ କ'ଣ? ରାକ୍ଷସ ବୁଝିଲା ରାଜା ଆଦର୍ଶ ନାମରେ ନିଜ ଅହମିକା ତୃପ୍ତ କରିବାକୁ ଚାହାନ୍ତି । ତେଣୁ ସେ ପ୍ରତିଶ୍ରୁତି ରକ୍ଷା କଲାନାହିଁ ଏବଂ ଅଟ୍ଟହାସ୍ୟ କଲା ।"

ରାଜାଙ୍କ ଉତ୍ତରଦାନ ଶେଷ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ସେ ବୃକ୍ଷ ଡାଳରେ ଝୁଲି ପଡ଼ିଲା । (କଳ୍ପିତ)





# ରାଜାସାହେବଙ୍କ କବିତ୍ୱ

ରାଜାସାହେବଙ୍କ ଶିକ୍ଷା ବିଭାଗରେ ଅଧ୍ୟକ୍ଷ ପଦ ଖାଲି ପଡ଼ିଲା । ଛଅଜଣ ଉଚ୍ଚ ଶିକ୍ଷିତ ଯୁବକ ସେ ପଦ ପାଇଁ ପ୍ରାର୍ଥୀ ହେଲେ । ଏକ ନିର୍ଦ୍ଦିଷ୍ଟ ଦିନ ସେମାନଙ୍କୁ ରାଜାସାହେବଙ୍କ ପାଖକୁ ଡକା ହେଲା ।

ରାଜାସାହେବ କହିଲେ, "ମୁଁ ଅନେକ କାବ୍ୟ କବିତା ପଢ଼ିବା ଫଳରେ ହଠାତ୍ କବିତା ଲେଖିବାର ପ୍ରେରଣା ଅନୁଭବ କଲି । କାଲି ରାତିରେ ଏ ଛଅଧାଡି କବିତା ଲେଖିଛି । ଏହା କହି ସେ କବିତାଟି ପଢ଼ି ଶୁଣାଇ ଦେଲେ ।"

ଛଅ ଜଣଙ୍କରୁ ପାଞ୍ଚଜଣ ଏପରି ଭାବ ଦେଖାଇଲେ । ସତେ ଅବା ସେମାନେ ଅତ୍ୟନ୍ତ ମୁଗ୍ଧ ହୋଇ ଯାଇଛନ୍ତି । ଜଣେ ତ ଆଖି ଛଳ ଛଳ କରି ଅନାଇ ରହିଲେ । ଆଉ ଜଣେ ଝରକା ଦେଇ ଶୂନ୍ୟକୁ ଅନାଇ ରହିଲେ । ଆଉ ଜଣେ ତଳକୁ ମୁହଁ କରି ଚୁଃ ଚୁଃ କରୁଥାନ୍ତି । ଚତୁର୍ଥ ଜଣକ କବିତାଟିର କେତୋଟି ଶବ୍ଦ ଅସ୍ପଷ୍ଟ ଭାବରେ ଉଚ୍ଚାରଣ କରୁଥାନ୍ତି ।

ରାଜା ସେମାନଙ୍କୁ ଲକ୍ଷ୍ୟ କରି ଦେଖିଲେ ଓ ପଚାରିଲେ, "କହୋ, କିପରି ଲାଗିଲା ? ଭଲ ଲାଗିଥିଲେ ଭଲ କୁହ । ନହେଲେ ସ୍ପଷ୍ଟ ଭାବରେ କୁହ କି କବିତାଟି ଭଲ ହୋଇନାହିଁ । ମୁଁ କିଛି ମନେ କରିବି ନାହିଁ । ପ୍ରେରଣା ଆସିଲା, ଲେଖିଦେଲି । ମୁଁ ଜାଣେନା ମୁଁ ସତରେ କବିତା ଲେଖୁଛି ନା ଆଉ କିଛି ଲେଖୁଛି ।"

କେବଳ ଜଣଙ୍କୁ ଛାଡ଼ି ବାକି ପାଞ୍ଚଜଣ କହିଲେ, "ବାଃ ବାଃ !"

ରାଜାସାହେବ ଖୁସି ହୋଇ କହିଲେ, "ତମମାନଙ୍କଠୁଁ ଉତ୍ସାହ ପାଇ ହଠାତ୍ ମେ

ଚିନି ଗୁଣର ଅନ୍ୱେଷଣ

ଅନ୍ତରରେ ପୁଣି କବିତା ଜାଗି ଉଠିଲାଣି । ବର୍ତ୍ତମାନ ବସି ନ ଲେଖିଲେ ନଚଳେ ! ତମେମାନେ ଯାଅ । ଆଗାମୀ ଗୁରୁବାର ଦିନ ଏତିକିବେଳେ ଆସିବ ।"

ଯୁବକମାନେ ଚାଲିଗଲେ । ଗୁରୁବାର ଦିନ ସେମାନେ ଆସି ପହଞ୍ଚିବା ବେଳକୁ ରାଜା-ସାହେବ ବିମର୍ଷ ହୋଇ ବସିଛନ୍ତି । ସେ କହିଲେ, "ସେଦିନ ମୁଁ ଯେଉଁ କବିତାଟି ଲେଖିଥିଲି, ତାହା ହଜାଇ ଦେଇଛି । ତମ ଭିତରୁ କାହାର ମନେ ଅଛି ଭଲା ?"

ପାଞ୍ଚଜଣ ଯୁବକ ପରସ୍ପର ଅନାଇ ଚୁପ୍ ରହିଲେ । ପ୍ରଥମ ଦିନ ବାହାବା ଦେଇ ନଥିବା ଯୁବକଟି କହିଲା, "ମଣିମା, ମୋର ମନେ ଅଛି ।" ଏହା କହି ସେ କବିତାଟି ବୋଲିଦେଲା ।

ରାଜା ହାତତାଳି ଦେଇ କହିଲେ, "ବାପ୍‌ରେ ! ତମର କି ଅପୂର୍ବ ସ୍ମୃତିଶକ୍ତି ! ଥରେ ଶୁଣିଦେଇ ମନେ ରଖି ପାରିଲ ।"

ଯୁବକ କହିଲା, "ମଣିମା ! ମୋର ଏଭଳି ପ୍ରଶଂସା ପ୍ରାପ୍ୟ ନୁହେଁ ।"

"କାହିଁକି ?" ରାଜା ପ୍ରଶ୍ନ କଲେ ।

"ଯଦି ମୋତେ କ୍ଷମା କରିବେ, ତେବେ ଯାଇ କହିବି । କବିତାଟି ଆପଣଙ୍କର ଲେଖା ନୁହେଁ ପରା ! କାରଣ ଯେତେବେଳେ ମୁଁ ଶିଶୁ, ସେତେବେଳେ ଏହା ମୋ ଜେଜେମା ମୋତେ ଶୁଣାଇଥିଲେ ଓ ସେ ତାଙ୍କ ବୋଉଙ୍କଠୁ ଶିଖିଥିଲେ ବୋଲି କହିଥିଲେ ।" ଯୁବକ କହିଲା ।

ରାଜାସାହେବ ହସିଲେ ଓ କହିଲେ, "ତମେ ଯେ ଶିଶୁ ଅବସ୍ଥାରେ ଏହା ଶୁଣି ଆଜିଯାଏ ମନେରଖି ପାରିଛ, ଏହା କ'ଣ ତମ ସ୍ମୃତିଶକ୍ତିର ପରିଚୟ ଦେଉନାହିଁ ? ମୁଁ କାହାରିଠାରେ ତିନୋଟି ଗୁଣ ଦେଖିବାକୁ ଚାହୁଁଥିଲି : ସୌଜନ୍ୟ, ସ୍ମୃତିଶକ୍ତି ଓ ସତ୍ୟ-ବାଦିତା । ତମଠିଁ ସେସବୁ ରହିଛି । ତମେହିଁ ମୋ ଶିକ୍ଷା ବିଭାଗର ଅଧ୍ୟକ୍ଷ ହେବାକୁ ଯୋଗ୍ୟ ।"



ପ୍ରାଚୀନ ସାହିତ୍ୟର କାହାଣୀ

# ଶକୁନ୍ତଳା-୧




ଦିନେ ମହର୍ଷି କଣ୍ୱ ଅରଣ୍ୟ ଭିତରେ ଦେଖିଲେ ଏକ ଅପୂର୍ବ ଦୃଶ୍ୟ । ଗୋଟିଏ ଶିଶୁକନ୍ୟାକୁ ବେଢ଼ି ରହିଛନ୍ତି ଦଳେ ଶକୁନ୍ତ ପକ୍ଷୀ । ଋଷି କନ୍ୟାଟିକୁ ଉଠାଇ ନେଲେ । ଧ୍ୟାନ ବଳରେ ସେ ଜାଣିଲେ ଯେ ସେ କନ୍ୟା ଋଷି ବିଶ୍ୱାମିତ୍ର ଓ ଅପ୍ସରା ମେନକାଙ୍କ କନ୍ୟା । ଶକୁନ୍ତ ପକ୍ଷୀମାନେ ତାକୁ ରକ୍ଷା କରିଥିବା ହେତୁ ସେ ତା'ର ନାମ ରଖିଲେ ଶକୁନ୍ତଳା ।



ଦିନେ ହସ୍ତିନାପୁରର ରାଜା ଦୁଷ୍ମନ୍ତ ଶିକାର ନିମନ୍ତେ ଅରଣ୍ୟକୁ ଯାଇଥାନ୍ତି । କଣ୍ୱ ମୁନିଙ୍କ ଆଶ୍ରମ ନିକଟରେ ତାଣ ସେ ନିଜର ଦେହରକ୍ଷୀମାନଙ୍କୁ ଛଡା କହିଦେଇ ଋଷିଙ୍କ ସହ ସାକ୍ଷାତ୍ ନିମନ୍ତେ ଏକାକୀ ଆଶ୍ରମକୁ ଗଲେ ।

ସେତେବେଳେ ତରୁଣୀ ଶକୁନ୍ତଳା ଅନ୍ୟ ଋଷିକନ୍ୟାମାନଙ୍କ ସହ ଆଶ୍ରମର ଉଦ୍ୟାନରେ ବିଚରଣ କରୁଥିଲେ । ଗୋଟାଏ ଭ୍ରମର ତାଙ୍କୁ ବ୍ୟସ୍ତ କରିବାର ଦେଖି ତାଙ୍କ ସଖୀମାନେ ଥଟ୍ଟାରେ କହିଲେ, "ଆରେ, ଏ ଭ୍ରମର ଜାଣେନା ଯେ ରାଜା ଦୁଷ୍ମନ୍ତଙ୍କ ରାଜୁତିରେ ଏମିତି ଦୁଷ୍ଟାମି ଚଳିବ ନାହିଁ !"





ସେମାନଙ୍କର ସେ ସଂଳାପ ଶୁଣିଦେଲେ ରାଜା ଦୁଷ୍ମନ୍ତ । ହଠାତ୍ ରାଜାଙ୍କୁ ଆଗରେ ଦେଖି ସେ ଋଷିକନ୍ୟାମାନେ ଚକିତ ହୋଇଗଲେ । ସେତେବେଳେ କଣ୍ୱ ମୁନି ଆଶ୍ରମରେ ନଥିଲେ । ତେଣୁ ରାଜାଙ୍କୁ ସ୍ୱାଗତ କରିବାର ଦାୟିତ୍ୱ କଣ୍ୱଙ୍କ ପାଳିତା କନ୍ୟା ଶକୁନ୍ତଳାଙ୍କ ଉପରେ ପଡିଲା ।

ନାନା ଫଳ ପୁଷ୍ପ ଦେଇ ଋଷିକନ୍ୟା-ମାନେ ରାଜାଙ୍କର ସମ୍ବର୍ଦ୍ଧନା କଲେ ଓ ଆଶ୍ରମରେ ବିଶ୍ରାମ ନେବା ନିମନ୍ତେ ତାଙ୍କୁ ଅନୁରୋଧ କଲେ । ଶକୁନ୍ତଳାଙ୍କ ସୌନ୍ଦର୍ଯ୍ୟ ଓ ବିନୟଶୀଳତାରେ ରାଜା ମୁଗ୍ଧ ହେଲେ ।





ରାଜା ଶୁଣିଲେ କେତେ ଦଳ ବଣ୍ୟଜନ୍ତୁ ଥରେ ଥରେ ଆଶ୍ରମ ଭିତରକୁ ପଶି-ଆସି ବିଭ୍ରାଟ କରୁଛନ୍ତି । ସେ ନିଜେ ସେସବୁ ହାତୀ ଓ ବଣ୍ୟ ମହିଷ ପଲକୁ ଆଶ୍ରମ ଅଞ୍ଚଳରୁ ତଡି ତଡ଼ି ବହୁତ ଦୂରକୁ ନେଇଗଲେ । କ୍ଲାନ୍ତ ରାଜାଙ୍କୁ ପରିଚର୍ଯ୍ୟା କଲେ ଶକୁନ୍ତଳା ଓ ସଖୀଗଣ ।

ରାଜା କେଇଦିନ ବିଶ୍ରାମ କରିବା ଭିତରେ ଶକୁନ୍ତଳାଙ୍କ ପ୍ରତି ତାଙ୍କ ମନରେ ଅନୁରାଗ ଜାତ ହେଲା । ଶକୁନ୍ତଳା ମଧ୍ୟ ରାଜାଙ୍କ ପ୍ରତି ଆକୃଷ୍ଟ ହେଲେ । ଦୁହେଁ ଗାନ୍ଧର୍ବ ରୀତିରେ ବିବାହ କଲେ । ଋଷିକନ୍ୟାମାନେ ବହୁତ ଆନନ୍ଦରେ ବରକନ୍ୟାଙ୍କୁ ବଧେଇ ଜଣାଇଲେ ।



କିନ୍ତୁ ରାଜକାର୍ଯ୍ୟ ଛାଡ଼ି ରାଜା କି
କେତେଦିନ ବନସ୍ତରେ ରହନ୍ତେ ?
ସେ ଶକୁନ୍ତଳାଙ୍କୁ କହିଲେ ଯେ ଯଥା-
ସମୟରେ ସେ ଆସି କଣ୍ୱ ମୁନିଙ୍କ
ଅନୁମତି ସହ ତାଙ୍କୁ ରାଣୀ ରୂପେ
ବରଣ କରି ନେଇଯିବେ । ବିଦାୟ
ବେଳେ ସେ ତାଙ୍କୁ ଉପହାର ଦେଲେ
ଏକ ମୁଦ୍ରିକା ।



ଶକୁନ୍ତଳା ଅଶ୍ରୁପୂର୍ଣ୍ଣ ନୟନରେ ରାଜାଙ୍କୁ
ବିଦାୟ ଦେଲେ । ଅନ୍ୟ ଋଷିକନ୍ୟା-
ମାନେ ରାଜାଙ୍କୁ ତାଗ୍‌ଦା କରିଦେଲେ,
ସେ ଯେପରି ଯଥାସମୟରେ ଆସି
ଶକୁନ୍ତଳାଙ୍କୁ ପ୍ରାସାଦକୁ ନେଇଯିବେ !
ରାଜା ଦୁଷ୍ମନ୍ତ ସେଥିରେ କଦାପି ତ୍ରୁଟି
ହେବନାହିଁ ବୋଲି ପ୍ରତିଶ୍ରୁତି ଦେଇ
ବିଦାୟ ନେଲେ ।





କିଛିଦିନ ପରେ କଣ୍ୱ ମୁନି ଆଶ୍ରମକୁ
ପ୍ରତ୍ୟାବର୍ତ୍ତନ କଲେ । ଶକୁନ୍ତଳାଙ୍କ
ମନରେ ଭୟ ଥାଏ—ପିତା ତାଙ୍କ
ଗାନ୍ଧର୍ବ ବିବାହ କଥା ଜାଣି କ'ଣ
କହିବେ ? ସେ ଗଭୀର ସଙ୍କୋଚରେ
ଯାଇ ପିତାଙ୍କୁ ପ୍ରଣାମ କଲେ । ଋଷି
ବୁଝିଲେ, କନ୍ୟାର ବିଶେଷ କିଛି
କହିବାର ଅଛି ।

(କ୍ରମଶଃ)



# ଜ୍ଞାନ ସୂତ୍ର

ବଣ ଭିତରେ, ନଦୀକୂଳରେ ଥିବା ଗୋଟିଏ ଗୁରୁକୁଳରେ ରହି ଦଳେ ପିଲା ଜଣେ ପ୍ରଖ୍ୟାତ ଗୁରୁଙ୍କଠାରୁ ଶିକ୍ଷା ଲାଭ କରୁଥିଲେ । ସେମାନଙ୍କ ଭିତରେ ଥିଲା ରଘୁନାଥ । ସେ ମୋଟେ ପାଠ ପଢୁ ନଥାଏ । ଗୁରୁ ଯାହା କହୁଥାନ୍ତି, ସେସବୁ କିଛି ମନେ ରଖୁ ନଥାଏ । ତେବେ ତା' ସ୍ୱଭାବ ଥିଲା ବହୁତ ଭଲ । ଗୁରୁଙ୍କ ପ୍ରତି ତା'ର ପ୍ରଗାଢ଼ ଭକ୍ତି ମଧ୍ୟ ଥାଏ । ତେଣୁ ଗୁରୁ ତାକୁ କଡ଼ାକରି କିଛି କହିପାରୁ ନଥାନ୍ତି ।

ଯେଉଁ ଛାତ୍ରମାନେ ରଘୁନାଥ ସହ ଏକ ସମୟରେ ଗୁରୁକୁଳରେ ଭର୍ତ୍ତି ହୋଇଥିଲେ, ସେମାନଙ୍କର ପାଠ ପଢ଼ା ଶେଷ ହେଲା । ସେମାନେ ସମସ୍ତେ ଗୁରୁଙ୍କଠୁଁ ବିଦାୟ ନେଇ ଚାଲିଗଲେ । ରଘୁନାଥ ଆସି ଗୁରୁଙ୍କୁ କହିଲା, "ଗୁରୁଦେବ, ମୁଁ ବି ଏଥର ଯିବି ତ ? ମୋ ପାଠପଢ଼ା ବି ଶେଷ ହେଲାଣି ? ଯଦି କିଛି ବାକି ରହିଯାଇଛି, ତେବେ କହିଦିଅନ୍ତୁ ।"

ଗୁରୁ କିଛି କହିଲେ ନାହିଁ । ରଘୁନାଥ ଉଦ୍‌ଗ୍ରୀବ ଭାବରେ ତାଙ୍କ ଆଖିକୁ ଏକ ଧ୍ୟାନରେ ଚାହିଁ ରହିଥାଏ । କିଛି ସମୟ ପରେ ସେ ପୁଣି ପଚାରିଲା, "ଗୁରୁଦେବ ! ବୋଧହୁଏ ଆପଣ ଅନ୍ୟମନସ୍କ ଥାଇ ମୋ ପ୍ରଶ୍ନଟି ଶୁଣି-ପାରିଲେ ନାହିଁ । ମୁଁ ପଚାରୁଥିଲି କି ମୋର ବିଦ୍ୟାଧ୍ୟୟନ ବି ଶେଷ ହେଲା ତ ? ଏଥର ମୁଁ ଯାଇ ପାରେଁ ? ଅବଶ୍ୟ ଆପଣଙ୍କ ଅନୁମତି ହେଲେ ଯିବି ।"

ରଘୁନାଥର ସରଳତା ଗୁରୁଙ୍କ ହୃଦୟରେ ଅନୁକମ୍ପା ଭାବର ସୃଷ୍ଟି କଲା । କିନ୍ତୁ ରଘୁନାଥ ତ କିଛି ବିଦ୍ୟା ଶିଖିନାହିଁ । ସେ କହିବେ କ'ଣ ? ସେ ଆଖି ବୁଜି କିଛି ସମୟ ବସି ରହିଲେ । ରଘୁନାଥ ପୁଣି କହିଲା, "ଗୁରୁଜୀ !"

ପଚିଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ



ଗୁରୁ ଦୀର୍ଘନିଃଶ୍ୱାସ ଛାଡ଼ି କହିଲେ, "ବାପା! କେତେ ଶିଖିଲ, କେତେ ବାକି ରହିଲା, ତା'ର ହିସାବ କରି ଆଉ ଲାଭ ନାହିଁ। ତୋତେ ତିନୋଟି ସରଳ କଥା କହୁଛି। ସେତକ ମନେ ରଖି କାମ କରୁଥିବୁ। ଭଗବାନ ତୋର ମଙ୍ଗଳ କରନ୍ତୁ।" ଗୁରୁ ଏହି ତିନି ସୂତ୍ର ଶିଖାଇଲେ: (୧) ବାଟ ଚାଲୁଥିଲେ ପାଇବୁ ସ୍ଥାନ (୨) ବୁଝି ସମଝିଲେ ପାଇବୁ ଜ୍ଞାନ (୩) ଜାଗିଥିଲେ ହେବ ନାହିଁ ମରଣ!

ଗୁରୁଙ୍କଠାରୁ ବିଦାୟ ନେଇ ରଘୁନାଥ ବାଟ ଚାଲିଲା। ଚାଲି ଚାଲି ପହଞ୍ଚିଗଲା ରାଜ୍ୟର ରାଜଧାନୀରେ। ଭାବିଲା, ଏହି ହେଲା 'ସ୍ଥାନ'। ଗୁରୁଙ୍କର ପ୍ରଥମ ଉପଦେଶ ସେ ତେବେ ଠିକ୍ ଠିକ୍ ପାଳନ କରି ଉପଯୁକ୍ତ ଫଳ ପାଇଛି। ବର୍ତ୍ତମାନ ଏଠାରେ ରହି ବୁଝି ସମଝି ଜ୍ଞାନ ଉପାର୍ଜନ କରିବା କଥା। ସେ ଜଣେ ବ୍ୟବସାୟୀଙ୍କ ଗୋଦାମ ଘରେ ରାତିରେ ପ୍ରହରୀ ରୂପେ ରହିବା କାମ ପାଇଲା। ଦିନବେଳେ ତା'ର ଛୁଟି। ସେ ଅଧାଦିନ ଶୋଇ କଟାଏ, ବାକି ଅଧାଦିନ ସହରରେ ବୁଲିବୁଲି କରି ନାନା ବିଷୟରେ ଲୋକଙ୍କ ସହ ଆଲୋଚନା କରେ। କୌଣସି ସ୍ଥାନରେ କିଛି ଆଲୋଚନା ହେଉଥିଲେ ମନଦେଇ ଶୁଣେ।

ସେ କ୍ରମେ ଗୋଟାଏ ଅଦ୍ଭୁତ କଥା ଜାଣିଲା: ସେ ଦେଶର ରାଜା ମରିଯାଇଥାନ୍ତି। ରାଜାଙ୍କର ପୁଅ ନଥିଲେ। ତାଙ୍କ ଝିଅକୁ ଯିଏ ବିଭା ହେବ, ସିଏ ହେବ ରାଜା। କିନ୍ତୁ ଝିଅକୁ କେହି ଯୁବକ ଆଉ ବିଭା ହେବାକୁ ଆଗଭର ହେଉ ନଥିଲେ। କାରଣ ହେଲା, ସେଠିକାର ବିଧି ଅନୁସାରେ ବରପାତ୍ର ଆସି ନଅରରେ ବିବାହର ତିନିଦିନ ଆଗରୁ ରହିବା କଥା। ତାକୁ କେତେ ପ୍ରକାର ଆଚାର ଅନୁଷ୍ଠାନ ପାଳିବାକୁ ହୁଏ। କିନ୍ତୁ ତିନିଥର ଧରି ତିନିଜଣ ବରହିଁ ସେଠି ପ୍ରଥମ ରାତି ରହିବା ପରେ ସକାଳେ ନିଜ ଶଯ୍ୟାରେ ମରି ଶୋଇଥିବାର ଦେଖା ଯାଇଥାଏ। ଏହାପରେ ଆଉ କୌଣସି ପାତ୍ର ଆଗଭର ହୋଇ ଆସୁ ନଥାନ୍ତି।

ରଘୁନାଥ ଭାବିଲା, ବୁଝି ସମଝି ସେ ଜ୍ଞାନ ପାଇଗଲା!

ଯେଉଁଦିନ ରଘୁନାଥ ପ୍ରଥମ ମାସର ଦରମା ପାଇଲା, ସେହିଦିନ ସେ ଭଲ ପୋଷାକ କିଣିଲା ଓ ମନ୍ତ୍ରୀଙ୍କ ପାଖକୁ ଯାଇ ଗୁରୁକୁଳରେ ଶିଖିଥିବା ଶୁଦ୍ଧ ଭାଷାରେ କଥା କହି ନିଜେ ରାଜଜେମାଙ୍କ ପତି ହେବାର ପ୍ରସ୍ତାବ ଦେଲା । ମନ୍ତ୍ରୀ ରଘୁନାଥର ବ୍ୟବହାରରେ ସନ୍ତୁଷ୍ଟ ହେଲେ ଓ ତାକୁ ସ୍ୱାଗତ କରି ନଅରକୁ ନେଲେ ।

ପ୍ରଥମ ଦିନ ଯେପରି ବିଧି ଓ ଅନୁଷ୍ଠାନ ହେବା କଥା, ସବୁ ହୋଇଗଲା । ରାତିରେ ସେ ନଅରକୁ ଲାଗିଥିବା ଅତିଥିଭବନର କୋଠରୀରେ ଶୋଇବାର ବ୍ୟବସ୍ଥା ହେଲା । ସେ ଭାବିଲା, ବର୍ତ୍ତମାନ ଗୁରୁ ଶିଖାଇଥିବା ତୃତୀୟ ନୀତି ପାଳନ କରିବା କଥା । ସେ ଯଦି ଜାଗି ରହିବ, ତେବେ ତା'ର ମରଣ ହେବ ନାହିଁ । ସେ ଦେଖିଲା, ସେ କୋଠରୀକୁ ଲାଗିଛି ଗୋଟାଏ ଉଦ୍ୟାନ । ପଛ କବାଟ ଖୋଲି ସେ ଗୋଟାଏ କଦଳୀ ଗଛ କାଟି ଆଣି ତାକୁ ଶେଯରେ ଥୋଇ ତା' ଉପରେ ଚଦର ଢାଙ୍କିଦେଲା—ସତେ ଅବା ମଣିଷଟିଏ ଶୋଇଛି । ତା'ପରେ ସେ ପର୍ଦ୍ଦା ଆଢୁଆଳରେ ଜଗି ରହିଲା ।

ମଝି ରାତି ବେଳକୁ ଉଦ୍ୟାନ ଭିତରୁ କଳା ନାଗଟିଏ ଆସି ଖଟ ଉପରକୁ ଉଠି ସେ କଦଳୀ ଗଛ ଦେହରେ ଚୋଟ ବସାଇଲା । ସଙ୍ଗେ ସଙ୍ଗେ ରଘୁନାଥ ବି ଦୌଡ଼ିଯାଇ ସାପ ଦେହରେ ଦେଲା ତରବାରିର ଚୋଟ । ସାପ ସେଠାରେ ମଲା । ସେ ସାପ ଓ କଦଳୀ ଗଛ ଉଦ୍ୟାନକୁ ଫୋପାଡ଼ି ଦେଇ ନିଦରେ ଶୋଇଗଲା ।

ସକାଳେ ମନ୍ତ୍ରୀ ଓ ପୁରୋହିତ ଆସି ଦେଖିଲେ, ପତି ସଜୀବ ଅଛନ୍ତି । ସେମାନେ ବଡ଼ ଖୁସି ହେଲେ । ଜେମାଙ୍କ ସହ ରଘୁ-ନାଥର ବାହାଘର ହୋଇଗଲା । ରଘୁନାଥ ରାଜା ହେଲା ଓ ରାଜା ଶ୍ରୀ ରଘୁନାଥ ବାଘସିଂହ ନାଗବୀର ନାମ ଗ୍ରହଣ କଲା ।



# ତୋପଠାରୁ ବଳି

ଶ୍ରାବସ୍ତୀ ନଗରୀକୁ ସବୁଦିନ ସକାଶେ ଶତ୍ରୁଠାରୁ ରକ୍ଷା କରିବା ମାନସରେ ରାଜା ଚନ୍ଦ୍ରସେନ ଗୋଟାଏ ମଜ୍‌ବୁତ୍ ପ୍ରାଚୀର ନିର୍ମାଣ କଲେ । ପ୍ରାଚୀରର ଯେଉଁ ଦ୍ୱାର ରଖାଗଲା, ତାହା ହେଲା ଲୁହାରେ ନିର୍ମିତ । ତହିଁ ଉପରକୁ ତୋପ ଚଳାଗଲା । ସେଥିରେ ପ୍ରାଚୀର ଓ ଲୌହ କବାଟର କିଛି କ୍ଷତି ହେଲାନାହିଁ । ରାଜା ଆନନ୍ଦରେ କହିଲେ, "ଆମର ଏ ନଗରୀ ଦୁର୍ଭେଦ୍ୟ ।"

ମନ୍ତ୍ରୀ ହସି ନମ୍ର କଣ୍ଠରେ କହିଲେ, "ମହାରାଜ, ତୋପ ଆଗରେ ସିନା ଦୁର୍ଭେଦ୍ୟ, କିନ୍ତୁ ତୋପଠୁଁ ବଳି ଶକ୍ତି ତ ପୁଣି ରହିଛି !" "ତୋପଠୁଁ ବଳି ସେ ଶକ୍ତି କ'ଣ ?" ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ । ମନ୍ତ୍ରୀ ପରେ କହିବେ ବୋଲି କହିଲେ । ଛଅମାସ ପରେ ଦିନେ ମନ୍ତ୍ରୀଙ୍କ ପରାମର୍ଶ କ୍ରମେ ରାଜା ଓ ମନ୍ତ୍ରୀ ଛଦ୍ମବେଶ ପକାଇ ନଗରୀ ବାହାରକୁ ଗଲେ । ଆସିଲା ବେଳକୁ ସୂର୍ଯ୍ୟାସ୍ତ ହୋଇଗଲାଣି ଓ ନଗରୀର ଲୌହ କବାଟ ବନ୍ଦ ହେଲାଣି । "ଭାଇ, କବାଟ ଖୋଲ !" ଛଦ୍ମବେଶୀ ରାଜା ଦ୍ୱାରରକ୍ଷୀକୁ କହିଲେ ।

"ସୂର୍ଯ୍ୟାସ୍ତ ପରେ ନଗରୀ ସଚିବଙ୍କ ଆଦେଶ ବିନା କବାଟ ଖୋଲାଯାଏ ନାହିଁ ।" ଦ୍ୱାରରକ୍ଷୀ କହିଲା ।

"ଆରେ ଭାଇ, ଆମର ବହୁତ ଜରୁରୀ କାମ ଅଛି ।" ଏହା କହି ମନ୍ତ୍ରୀ ତା ହାତରେ ସୁନା ମୋହର ଭର୍ତ୍ତି ଥଳିଟିଏ ଧରାଇ ଦେଲେ । ଦ୍ୱାରରକ୍ଷୀ ଦ୍ୱାର ଖୋଲିଦେଲା । ମନ୍ତ୍ରୀ ରାଜାଙ୍କୁ କହିଲେ, "ଏଥର ବୁଝିଲେ ତୋପଠୁଁ ବଳି ଅସ୍ତ୍ର କ'ଣ ? ଉତ୍କୋଚ । ଆମ ଲୋକଙ୍କ ଚରିତ୍ର ଦୁର୍ବଳ ଥିଲେ ଯେତେ ଠାଣୁଆ ପ୍ରାଚୀର ଉଠାଇଲେ ବି ଆମେ ନିରାପଦ ନୋହୁଁ ।





# କୃଷ୍ଣାବତାର

ମିଥିଳାରେ ବାସ କରୁଥିବା ଯଶୋଦାଙ୍କ ଭାଇ କୁମ୍ଭକଙ୍କ ଗୋଶାଳାରେ ରାକ୍ଷସ କାଳନେମୀର ସାତ ସନ୍ତାନ ଷଣ୍ଢ ରୂପେ ଜନ୍ମ ଗ୍ରହଣ କରି ରାଜ୍ୟରେ ଭୀଷଣ ଉପଦ୍ରବ କରୁଥାନ୍ତି । କୁମ୍ଭକ ଯେତେ ଚେଷ୍ଟା କଲେ ମଧ୍ୟ ସେମାନଙ୍କୁ ସମ୍ଭାଳିପାରୁ ନଥାନ୍ତି । ପ୍ରଜା-ମାନଙ୍କର ଧାନପରିବା ନଷ୍ଟ କରିବା ସଙ୍ଗେ ସଙ୍ଗେ ସେ ଷଣ୍ଢମାନେ ଯାହାକୁ ଆଗରେ ଦେଖୁଥାନ୍ତି, ତାକୁ ଆକ୍ରମଣ କରି ତଡ଼ିନେଇ ଯାଉଥାନ୍ତି । ସେମାନଙ୍କ ହାବୁଡ଼ରେ ପଡି ସବୁଦିନେ କିଛି କିଛି ଲୋକ ଖଣ୍ଡିଆ ଖାବରା ହେଉଥାନ୍ତି । ଲୋକମାନେ କୁମ୍ଭକଙ୍କୁ ଶ୍ରଦ୍ଧା କରୁଥାନ୍ତି । ତେଣୁ ସେମାନେ ତାକୁ କିଛି କହୁ ନଥାନ୍ତି କିମ୍ବା ରାଜାଙ୍କ ପାଖରେ ବି ଏ ବିଷୟରେ କିଛି ଅଭିଯୋଗ କରୁ ନଥାନ୍ତି । କିନ୍ତୁ କେତେଦିନ ବା ରାଜ୍ୟର ଗୋଟିଏ ଅଞ୍ଚଳରେ ହେଉଥିବା ଏଭଳି ଉତ୍ପାତ ରାଜାଙ୍କଠୁଁ ଲୁଚି ରହିବ ? ରାଜାଙ୍କ ଚରମାନେ ଏହା ଦେଖିଲେ ଓ ସେମାନେ ସେମାନଙ୍କ ଉପରିସ୍ଥ କର୍ମଚାରୀମାନଙ୍କୁ ଏକଥା କହିଲେ ।

ଏସବୁ କଥା ଯାଇ ମିଥିଳାର ରାଜାଙ୍କ କାନରେ ପଡ଼ିଲା । ପ୍ରଥମେ ସେ ଏହା ଉପରେ କୌଣସି ଗୁରୁତ୍ୱ ଦେଲେ ନାହିଁ । ବରଂ ସେ ଏଭଳି ଆତଙ୍କକୁ ହସି ଉଡ଼ାଇଦେଲେ । ଏ ପ୍ରସଙ୍ଗ ଯିଏ ତାଙ୍କୁ ଶୁଣାଇଥିଲା, ତାକୁ ସେ କହିଲେ, "ଆମ ରାଜ୍ୟରେ କ'ଣ ଏଭଳି ବୀରମାନେ ବସବାସ କରୁଛନ୍ତି ଯେ ସେମାନଙ୍କୁ ଷଣ୍ଢମାନେ ଘାଇଆ କରି ରଖିବେ ? ଏ

ଶ୍ରୀକୃଷ୍ଣଙ୍କ ବାଲ୍ୟକାଳ ସମ୍ପର୍କରେ ଆଧାରିତ କେତେକ ପ୍ରଚଳିତ କାହାଣୀ ।



ବିଷୟରେ ବିଶେଷ ପ୍ରଚାର ନ ହେବା ଭଲ । ପ୍ରଚାର ହେଲେ ଅନ୍ୟ ରାଜ୍ୟର ଲୋକେ ହସିବେ । ଆମକୁ ଭୀରୁ ବୋଲି କହିବେ ।"

ମିଥିଳା ରାଜା ଜାଣି ନଥିଲେ ଯେ ସେ ଷଣ୍ଢମାନେ ସାଧାରଣ ଷଣ୍ଢ ନୁହନ୍ତି, ଷଣ୍ଢ ରୂପୀ ରାକ୍ଷସ !

ସେ ଯାହାହେଉ, ସେ ଷଣ୍ଢ ଆତଙ୍କକୁ ଯେ ତୁଚ୍ଛ ମଣିବା କଥା ନୁହେଁ, ଏକଥା ଅଳ୍ପଦିନ ଭିତରେ ତାଙ୍କ ଆଗରେ ସ୍ପଷ୍ଟ ହୋଇଗଲା । ଦଳ ଦଳ ଲୋକ ଆସି ସେ ବିଷୟରେ ଅଭିଯୋଗ କଲେ । ତେଣିକି ରାଜା ଦେଖିଲେ ସେ ବିଷୟରେ କିଛି ନକଲେ ନ ହୁଏ । ରାଜା ଦିନେ ଯାଇ ଛଦ୍ମବେଶରେ ଲୁମ୍ବକ ଯେଉଁ ଅଞ୍ଚଳରେ ବାସ କରୁଥିଲା, ସେ ଅଞ୍ଚଳରେ ପହଞ୍ଚିଲେ । କିଛି ସମୟ ଇତସ୍ତତଃ ବୁଲିବା ପରେ ସେ ଦେଖିଲେ, ହଠାତ୍ ଗୋଟିଏ ଅଞ୍ଚଳରେ ଲୋକେ ଚିତ୍କାର କରୁଛନ୍ତି । ଧୂଳି ଉଡ଼ି ଆକାଶ ମଳିନ ଦିଶୁଛି । ରାଜା ଆଶ୍ଚର୍ଯ୍ୟ ହୋଇ ସେ ଦିଗକୁ ଅଗ୍ରସର ହେଲେ । ସେ ଯାଇ ପହଞ୍ଚିବା ବେଳକୁ ଷଣ୍ଢମାନେ ଅବଶ୍ୟ ପଳାଇଗଲେଣି, କିନ୍ତୁ ସେମାନେ ଜଣେ ଗରିବ ଲୋକର କୁଡ଼ିଆ ଭାଙ୍ଗି ପକାଇଛନ୍ତି । ସେ ଲୋକଟି କାନ୍ଦୁଛି । ଅନ୍ୟମାନେ ତାକୁ ସାନ୍ତ୍ୱନା ଦେବା ସଙ୍ଗେ ସଙ୍ଗେ ସେ ଷଣ୍ଢମାନଙ୍କ ଉତ୍ପାତ ବିଷୟରେ ଅନେକ ଘୃଣା ଆଲୋଚନା କରୁଛନ୍ତି ।

ରାଜା ମନ ଦେଇ ସେମାନଙ୍କ କଥା ଶୁଣିଲେ । ସେ ଗରିବ ଲୋକକୁ କିଛି ଅର୍ଥ ସାହାଯ୍ୟ ଦେଇ ନୀରବରେ ବାହୁଡ଼ିଗଲେ ।

ସେ ଲୁମ୍ବକଙ୍କୁ ଡକାଇ କହିଲେ, "ଆରେ ଭାଇ, ତମେ ଜଣେ ସମ୍ଭ୍ରାନ୍ତ ଧନୀକ । ତମ ପାଖରେ କ'ଣ କେତୁଟା ଷଣ୍ଢଙ୍କୁ ଜବଦ କରିଭଳି ଜନବଳ ନାହିଁ ? ଛିଃ, ତମେ ଏ ବିଷୟରେ ଯାହା କରିବାର ତାହା ନ କରୁଛ କିପରି ? ମୋ ପାଏ କଥା ଆସିବ କାହିଁକି ?"

ଲୁମ୍ବକ ଲଜ୍ଜିତ ହେଲେ । ସେ ରାଜାଙ୍କୁ ବୁଝାଇ ପାରିଲେ ନାହିଁ ଯେ ବାସ୍ତବିକ ସେ ଦୁର୍ଦ୍ଧର୍ଷ ଷଣ୍ଢମାନଙ୍କ ଆଗରେ ସେ ଅସହାୟ । ତେବେ ସେ ଦିଗରେ ଯାହା କରିବା ସମ୍ଭବ

ସେ ତାହା କରିବେ ବୋଲି ପ୍ରତିଶ୍ରୁତି ଦେଇ ରାଜାଙ୍କଠାରୁ ବିଦାୟ ନେଲେ ।

ରାଜାଙ୍କଠାରୁ ବିଦାୟ ନେଇ କୁମ୍ଭକ ଘରେ ପହଞ୍ଚି ଚିନ୍ତାମଗ୍ନ ହେଲେ । ସେ କରିବେ କ'ଣ ? ଷଣ୍ଢମାନଙ୍କୁ ଦମନ କରିବା ନିମନ୍ତେ କ'ଣ ରାଜାଙ୍କୁ ସୈନ୍ୟବାହିନୀ ଯୋଗାଇଦେବା ନିମନ୍ତେ ଅନୁରୋଧ କରିବେ ? ରାଜା ସେ ଅନୁରୋଧକୁ କିପରି ଭାବରେ ଗ୍ରହଣ କରିବେ ? ଅଟ୍ଟହାସ୍ୟ କରିବେ ନାହିଁ ତ ? ଚିନ୍ତାରେ କୁମ୍ଭକ ରାତିରେ ଶୋଇପାରିଲେ ନାହିଁ ।



ସକାଳେ ଉଠି ସେ ଘୋଷକମାନଙ୍କୁ ଡକାଇ କହିଲେ କି, "ଯାଅ, ରାଜ୍ୟଯାକ ଘୋଷଣା କରିଦିଅ, ଯିଏ ଷଣ୍ଢମାନଙ୍କୁ ଦମନ କରିପାରିବ, ସିଏ ମୋ ପାଳିତା କନ୍ୟା ନୀଳାକୁ ବିଭା ହେବ ।" ଘୋଷକମାନେ ଚାରିଦିଗକୁ ବିଛେଇ ହୋଇଗଲେ ।

ପରଦିନହିଁ ନନ୍ଦ ଯଶୋଦାଙ୍କ ସହ କୃଷ୍ଣ ବଳରାମ ଏବଂ କେତେକ ଗୋପବାଳକ ଆସି କୁମ୍ଭକଙ୍କ ଘରେ ପହଞ୍ଚିଗଲେ । କୁମ୍ଭକଙ୍କ ପୁତ୍ର ଶ୍ରୀଧାମର ଆନନ୍ଦ କହିଲେ ନସରେ । ସେ କୃଷ୍ଣଙ୍କୁ କୁଣ୍ଢାଇ ପକାଇଲା । ସମସ୍ତେ ଆନନ୍ଦରେ କୁମ୍ଭକଙ୍କ ଘରକୁ ଗଲେ ।

ନନ୍ଦ କୁମ୍ଭକଙ୍କୁ ପଚାରିଲେ, "ଭାଇ, ଆମେ ବାଟରେ ଆସିବା ବେଳେ ଗୋଟାଏ ଘୋଷଣା ଶୁଣିଲୁଁ । ସେ ଘୋଷଣାରେ ଯାହା କୁହାଗଲା, ତାହା କ'ଣ ସତ୍ୟ ?"

କୁମ୍ଭକ ମୁହଁ ଶୁଖାଇ କହିଲେ, "ହଁ, ଭାଇ, ସତ । ସାତ ଷଣ୍ଢଙ୍କ ଅତ୍ୟାଚାରରେ ଲୋକେ ଯେପରି ଅତିଷ୍ଠ, ମୁଁ ସେହିପରି ମ୍ରିୟମାଣ । ଷଣ୍ଢମାନଙ୍କୁ ଯିଏ କାବୁ କରିବ ସେ ମୋ ସମ୍ମାନ ବଞ୍ଚାଇବ ବୋଲି ଜାଣ । ମୋ ପୋଷ୍ୟ କନ୍ୟା ନୀଳାକୁ ଜାଣିଛ । ସେ ଯେପରି ସୁନ୍ଦରୀ, ସେହିପରି ସତ୍ ସ୍ୱଭାବ-ସମ୍ପନ୍ନା । ତେଣୁ ମୁଁ ଘୋଷଣା କରିଛି ଯିଏ ଷଣ୍ଢମାନଙ୍କୁ ଦମନ କରିପାରିବ, ସେ ନୀଳାକୁ ବିଭା ହେବ ।"

କୁମ୍ଭକଙ୍କଠୁଁ ଏକଥା ଅତିଥିମାନେ ଶୁଣିଲେ । ନୀଳା ଅନ୍ତରାଳରେ ଥାଇ ଏହା ଶୁଣୁଥାନ୍ତି । ସେ ଥରେ କୃଷ୍ଣଙ୍କ ଆଡ଼କୁ ଅନାଇଲେ ।



ସେହିଦିନ ରାତିରେ ସାତ ଷଣ୍ଢ ଆସି କୁମ୍ଭକଙ୍କ ଉଦ୍ୟାନରେ ପଶି ଉତ୍ପାତ କଲେ। ସେମାନେ କେତେ ଫଳ ଫୁଲ ଗଛ ଉପାଡ଼ି ପକାଇଲେ, କେତେ ଦଳାଚକଟି ଦେଲେ, ସେସବୁର ହିସାବ ନାହିଁ।

କୁମ୍ଭକଙ୍କ ପରିଚାରକାମାନେ ଉଦ୍ୟାନ ଭିତରେ ଉତ୍ପାତର ଶବ୍ଦ ଶୁଣି ଦୌଡ଼ିଗଲେ। କିନ୍ତୁ ଅନ୍ଧକାର ଭିତରେ ଷଣ୍ଢମାନଙ୍କୁ ସାମ୍ନା କଲା ଭଳି ବଳ ସେମାନଙ୍କର ନଥିଲା। ଷଣ୍ଢ-ମାନେ ଉଦ୍ୟାନ ବ୍ୟାପି ଦୌଡ଼ା ଦୌଡ଼ି କରୁଥାନ୍ତି। ଉଦ୍ୟାନ-ରକ୍ଷୀ ଜଣେ ଦୁଇଜଣ ସେମାନଙ୍କ ଆଗରେ ପଡ଼ି ଆହତ ହେଲେ। ପରିଚାରକାମାନେ ମଶାଲ୍ ଜାଳି, ଆଖପାଖର ଲୋକଙ୍କୁ ଉଠାଉଠା କରି ସଂଘବଦ୍ଧ ଭାବରେ ଅଗ୍ରସର ହେବା ବେଳକୁ ଷଣ୍ଢମାନେ ଉଦ୍ୟାନ ଭିତରୁ ଚାଲିଗଲେଣି।

ସକାଳେ ଉଦ୍ୟାନର ସେ ଦୃଶ୍ୟ ଦେଖି କୁମ୍ଭକ ଓ ନନ୍ଦ ଅତ୍ୟନ୍ତ ଦୁଃଖିତ ହେଲେ। ସେତେବେଳେ ଉଦ୍ୟାନ ବାହାରେ ସେ ସାତ ଷଣ୍ଢ ଠିଆ ହୋଇ କ୍ରୂର ଆଖିରେ ସେମାନଙ୍କ ଆଡ଼େ ଅନାଇଥାନ୍ତି। ସତେ ଅବା ସେମାନେ କହୁଥାନ୍ତି, ଯଦି ସାହସ ଅଛି, ତେବେ ଆସି ଆମକୁ ଆୟତ୍ତ କରିବାକୁ ଚେଷ୍ଟା କର!

ନନ୍ଦଙ୍କ ସହ ଯେଉଁମାନେ ଆସିଥିଲେ, ତାଙ୍କ ଭିତରେ ଥିଲେ ଘୋଷବନ୍ତ ନାମକ ଜଣେ ଯୁବକ। ସେ ଖୁବ୍ ବଳବାନ୍ ଓ ସାହସୀ। ସେ ଉତ୍ତ୍ୟକ୍ତ ହୋଇ କହିଲେ, "ଆଜି କିଛି ନ ହେଲେ ବି ଏ ଷଣ୍ଢମାନଙ୍କୁ ମୁଁ ଘଉଡ଼ାଇ ଦେବି। ଏହା କହି ସେ ଖଣ୍ଡିଏ ଶକ୍ତ ଲଠି ସଂଗ୍ରହ କରି ଖୁବ୍ ଉଚ୍ଚ କଣ୍ଠରେ ପାଟିକରି ସେ ଷଣ୍ଢମାନଙ୍କ ଆଡ଼େ ଖେପିଗଲେ। କିନ୍ତୁ ମୁହୂର୍ତ୍ତକ ଭିତରେ ଗୋଟିଏ ଷଣ୍ଢ ତାଙ୍କୁ ଲୁଷି ଦେଇ ତଳେ ପକାଇଦେଲା। ସେ ଚେତା ହରାଇଲେ।

ସମସ୍ତଙ୍କଠାରୁ ଟିକିଏ ଦୂରରେ ଠିଆ ହୋଇ ଶ୍ରୀକୃଷ୍ଣ ସେ ଷଣ୍ଢମାନଙ୍କୁ ଲକ୍ଷ୍ୟ କରୁଥାନ୍ତି। ତାଙ୍କ ମୁହଁରେ ମୃଦୁ ହସ ଖେଳିଗଲା। ସେ ନିଶ୍ଚୟ ବୁଝିପାରିଲେ, ସେ ଷଣ୍ଢମାନେ ବାସ୍ତବରେ କେତେକ ଦୁଷ୍ଟ ଶକ୍ତି। ଷଣ୍ଢ ରୂପ



ର ଯେପରି ପ୍ରକାର ଅଶାନ୍ତ ବୃଦ୍ଧି କରିବା
ମ୍ଭବ ତାହା କରି ଚାଲିଛନ୍ତି।

ଘୋଷଚନ୍ଦ୍ର ତଳେ ପଡ଼ିଯିବାର ଦେଖି ତାଙ୍କ ବନ୍ଧୁମାନେ ତାଙ୍କ ପାଖକୁ ଯିବାକୁ ଉତ୍କଣ୍ଠିତ ହେଲେ। କିନ୍ତୁ ଯିବେ କପରି। ସେମାନେ ଯେମିତି ସେ ଆଡ଼େ ଅଗ୍ରସର ହେବାକୁ ଉଦ୍ୟତ ହେବେ, ସେମିତି ସେ ଷଣ୍ଢମାନେ ସେମାନଙ୍କ ଆଗକୁ ଖେପି ଆସିବେ। ଷଣ୍ଢମାନଙ୍କର ସେ ପ୍ରତିହିଂସା ପରାୟଣତା ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହେଉଥାନ୍ତି।

ସମସ୍ତେ ହାୟ ହାୟ କରୁଥାନ୍ତି। କିନ୍ତୁ କେହି ଷଣ୍ଢମାନଙ୍କ ଭିତରକୁ ଯିବାକୁ ସାହସ କରୁ ନଥାନ୍ତି। ହଠାତ୍ ଶ୍ରୀକୃଷ୍ଣ ଦୌଡ଼ିଗଲେ। ନନ୍ଦ ଓ ଯଶୋଦା ପାଟି କରି କହିଲେ, "ଆରେ, ତୁ ଇଏ କ'ଣ କରୁଛୁ?" କିନ୍ତୁ ସେତେବେଳକୁ ସେ ଯାଇ ଷଣ୍ଢଙ୍କ ମଝିରେ।

କେଇ ମୁହୂର୍ତ୍ତ ଭିତରେ ସବୁ ଓଲଟପାଲଟ ହୋଇଗଲା। ଶ୍ରୀକୃଷ୍ଣ କାହାକୁ ଠେଲି ଦେଲେ ତ କାହାକୁ ବିଧାଏ ମାରିଲେ। ପୁଣି ଆଉ କେହି ଶିଙ୍ଗ ବାଙ୍କେଇ ତାଙ୍କ ଆଡ଼େ ଝପଟି ଆସିବା ମାତ୍ରେ ସେ ତା' ଶିଙ୍ଗକୁ ଧରି ହଲେଇ ଦେଲେ। ବାସ୍! ସାତଟି ଯାକ ଷଣ୍ଢ ଚେତା ହରାଇ ତଳେ ପଡ଼ିଗଲେ। ତା'ପରେ ଉଠିପଡ଼ି ଦୌଡ଼ିବାକୁ ଲାଗିଲେ। ଗୋପପୁରରୁ ଆସିଥିବା ବାଳକମାନେ ଆନନ୍ଦରେ ଷଣ୍ଢଙ୍କ ପଛରେ ଦୌଡ଼ିଲେ। ସେମାନଙ୍କୁ ଅନୁସରଣ କଲେ ସ୍ଥାନୀୟ ଲୋକେ। ପ୍ରଥମଥର ପାଇଁ ମଣିଷମାନେ ଷଣ୍ଢଙ୍କ ଆଗରେ ଛନ୍ଦଭଙ୍ଗ ନଦେଇ ଷଣ୍ଢମାନେ ମଣିଷଙ୍କ ଆଗରେ ଛନ୍ଦଭଙ୍ଗ ଦେବାର ଦେଖାଗଲା। ଯେଉଁମାନେ ସେ ଦୃଶ୍ୟ ଦେଖିଲେ, ସେମାନଙ୍କ ଆନନ୍ଦର ସୀମା ରହିଲା ନାହିଁ। ସେମାନେ କୁଆଡେ ଗଲେ କେହି ଜାଣିଲେ ନାହିଁ। କିନ୍ତୁ ଆଉ ସେମାନଙ୍କୁ ରାଜ୍ୟ ଭିତରେ କେଉଁଠି ହେଲେ ଦେଖିବାକୁ ମିଳିଲା ନାହିଁ।

"ବର୍ତ୍ତମାନ ମୋତେ ମୋ ଘୋଷଣା ଅନୁସାରେ କାମ କରିବାକୁ ହେବ। ନୀଳା ସହିତ କୃଷ୍ଣଙ୍କର ବିବାହ ହେବା ଚାହିଁ।" କୁମ୍ଭକ ନନ୍ଦଙ୍କୁ କହିଲେ। ତାହାହିଁ ହେଲା। ଆନନ୍ଦ

ଉତ୍ସବ ଭିତରେ ବିବାହ ସମ୍ପନ୍ନ ହୋଇଗଲା । ମିଥିଲା ରାଜ୍ୟରେ କିଛିଦିନ ଅତିବାହିତ କରି ନନ୍ଦ ଯଶୋଦା କୃଷ୍ଣ, ନୀଳା ଓ ଅନ୍ୟ-ମାନଙ୍କୁ ଧରି ଗୋପପୁର ଲେଉଟି ଆସିଲେ । ପୁଣି ପୂର୍ବଭଳି ଶାନ୍ତିମୟ ଜୀବନଯାତ୍ରା ଆରମ୍ଭ ହେଲା । କୃଷ୍ଣ ବଳରାମ ଗୋଧନ ଧରି ନଦୀ-କୂଳକୁ ଯାଉଥାନ୍ତି । ଗୋପବାଳକମାନେ କୃଷ୍ଣଙ୍କୁ ନିଜର ସଖା ଭାବରେ ଦେଖୁଥାନ୍ତି । କୃଷ୍ଣ କୌଣସି ଅସମ୍ଭବ କାର୍ଯ୍ୟ କଲେ ସେମାନେ ମୁଗ୍ଧ ହେଉଥାନ୍ତି, କିନ୍ତୁ ସେମାନଙ୍କ ଭିତରେ ସଖ୍ୟଭାବ ଏତେ ପ୍ରବଳ ଥାଏ ଯେ, ସେମାନେ କୃଷ୍ଣଙ୍କୁ ସଖା ଛଡ଼ା ଅନ୍ୟ କୌଣସି ଭାବରେ କଳ୍ପନା କରିବାକୁ ସୁଖ ପାଉ ନଥାନ୍ତି ।



ତେବେ ମୁନିଋଷିଙ୍କ ଭିତରେ ଜଣେ ଜଣେ କୃଷ୍ଣ କିଏ ସେକଥା ବୁଝିପାରୁଥାନ୍ତି । ଥରେ ବାମଦେବ ଓ ଭରଦ୍ୱାଜ ନାମକ ଦୁଇ ଋଷି ଗୋପପୁର ନିକଟବର୍ତ୍ତୀ ପ୍ରାନ୍ତର ଦେଇ ଯାଉଁ ଯାଉଁ ଗୋଟିଏ ବୃକ୍ଷ ମୂଳରେ କୃଷ୍ଣ ବଳରାମ ବସିଥିବାର ଦେଖିଲେ । ଦୁଇ ଭାଇ ଦୁଇ ଋଷିଙ୍କୁ ସ୍ୱାଗତ କରିବା ମାତ୍ରେ ଋଷି ଦୁହେଁ ମୁଗ୍ଧ ହୋଇ ସେମାନଙ୍କୁ ଦେଖିଲେ ଓ ପଚାରିଲେ, "ତୁମ୍ଭେମାନେ କିଏ ?"

"ଆମ୍ଭେମାନେ ନନ୍ଦ ଯଶୋଦାଙ୍କ ପୁଅ ।" କୃଷ୍ଣ ଉତ୍ତର ଦେଲେ ।

"ସେତିକି ପରିଚୟ କ'ଣ ଯଥେଷ୍ଟ ?" ପଚାରିଲେ ଦୁଇ ଋଷି ।

ଏ ପ୍ରଶ୍ନର କୌଣସି ଉତ୍ତର ନଦେଇ କୃଷ୍ଣ ହସିଦେଲେ । ସେ ହସ ଦେଖିଦେବା ମାତ୍ରେ ଦୁଇ ଋଷି ଧ୍ୟାନସ୍ଥ ହେଲେ । ଧ୍ୟାନରେ ସେମାନେ ଠିକ୍ ବୁଝିଗଲେ କୃଷ୍ଣ ବଳରାମ କିଏ । ସେମାନଙ୍କ ଆନନ୍ଦ କଥା କହିହେଲେ ନସରେ । କିନ୍ତୁ ସେମାନେ ବୁଝିଲେ, ଲୀଳା ପାଇଁ ଭଗବାନଙ୍କୁ ଏହିପରି ଗୋପନ ରୂପରେ ରହିବାକୁ ପଡ଼େ । ସେମାନେ ନିଜ ନିଜ ଉପଲବ୍ଧି ପ୍ରକାଶ ନ କରି ଖାଲି କୃଷ୍ଣ ବଳରାମଙ୍କୁ ଦୀର୍ଘ ସମୟ ଅନାଇ ରହି ନିଜ ରାସ୍ତାରେ ଚାଲିଗଲେ ।

ଅନେକ ସମୟରେ କୃଷ୍ଣ ବଳରାମ ଓ ତାଙ୍କ ସାଙ୍ଗମାନେ ନଦୀ କୂଳରେ ରହିଥିବା ବିସ୍ତୀର୍ଣ୍ଣ

ପ୍ରାନ୍ତର ଓ ଅରଣ୍ୟ ମଧ୍ୟରେ ପ୍ରବେଶ କରି ନୂଆ ନୂଆ ସ୍ଥାନ ଆବିଷ୍କାର କରୁଥାନ୍ତି । ସ୍ଥାନେ ସ୍ଥାନେ ଛୋଟ ଛୋଟ ସରୋବର ରହିଥାଏ । ସେସବୁର ଜଳ ସୁଶୀତଳ । ସରୋବର କୂଳେ କୂଳେ କେତେ ଧରଣର ଫଳଫୁଲ ଭରା ବୃକ୍ଷଲତା । ପ୍ରକୃତି ତା'ର ସମ୍ଭାର ଅଜାଡ଼ି ଦେଉଥାଏ । ଶ୍ରୀକୃଷ୍ଣଙ୍କ ଦଳ ସେସବୁ ସ୍ଥାନ ଦେଖି ମୁଗ୍ଧ ହେଉଥାନ୍ତି । ଆଶ୍ଚର୍ଯ୍ୟର କଥା, ବଣର ପଶୁପକ୍ଷୀମାନେ ସେମାନଙ୍କୁ ଦେଖି ଭୟଭୀତ ନ ହୋଇ ବରଂ ଆନନ୍ଦିତ ହେବା ଭଳି ମନେ ହେଉଥାଏ ।

ଥରେ ଥରେ ବଣ ଭିତରେ ବର୍ଷା ହେଲେ ସେ ତରୁଣମାନଙ୍କର ଉତ୍ସାହ ଆହୁରି ବଢ଼ି ଯାଉଥାଏ । ସେମାନେ ବର୍ଷାରେ ଦୌଡ଼ୁଥାନ୍ତି । ବର୍ଷାବେଳେ ଯମୁନା ନଦୀରେ ସ୍ନାନ ଓ ସନ୍ତରଣ କରିବାରେ ପୁଣି ନୂଆ ପ୍ରକାର ଶିହରଣ ଥାଏ । ବର୍ଷାବେଳେ ପଶୁପକ୍ଷୀମାନେ ଯେପରି ଗଛରେ ଆଶ୍ରୟ ନେଉଥାନ୍ତି, ମଝେ ମଝେ ସେ ତରୁଣମାନେ ବି ସେମିତି ଆଶ୍ରୟ ନେଉଥାନ୍ତି । ପଶୁମାନେ ସେମାନଙ୍କ ପ୍ରତି ଏପରି ବ୍ୟବହାର କରୁଥାନ୍ତି, ସତେ ଅବା ସେମାନେ ସେହି ବଣର ବାସିନ୍ଦା !

ଦିନେ ପ୍ରାନ୍ତର ପାଖରେ ଥିବା ଗୋଟିଏ ବଣ ଭିତରେ ପଶି କୃଷ୍ଣ ଏକ ସରୋବର ଦେଖିଲେ । ସେ ସରୋବରର ଜଳର ରଙ୍ଗ ବିଚିତ୍ର ଦିଶୁଥାଏ । ପୁଣି ସରୋବରରେ ଏପରି ତରଙ୍ଗ ଖେଳୁଥାଏ, ସତେ ଅବା ତାହା ସରୋବର ନୁହେଁ, ସମୁଦ୍ର ।

ପାଖରେ ଗୋଟିଏ କଦମ୍ବ ବୃକ୍ଷ ଥିଲା । କିନ୍ତୁ ସେ ବୃକ୍ଷରେ ଗୋଟିଏ ମଧ୍ୟ ପତ୍ର ନଥିଲା । ସେଠାକାର ବାତାବରଣ କିପରି ବିଷାକ୍ତ ଲାଗୁଥିଲା ।

"ଏ ସରୋବରରେ କ'ଣ ରହିଛି ଦେଖିବା ଦରକାର ।" ଏହା କହି କୃଷ୍ଣ ଗଛ ଉପରକୁ ଉଠିଗଲେ ଓ ହଠାତ୍ ସରୋବର ଭିତରକୁ ଲମ୍ଫ ଦେଲେ ।

(କ୍ରମଶଃ)





# ଅଭିନବ ରାଜମୁକୁଟ

ଚୀନ ଦେଶର ଏକ ରାଜ୍ୟର ରାଜାମାନେ ବହୁ ପୁରୁଷ ଧରି ଗୋଟାଏ ଅଦ୍ଭୁତ ଟୋପି ପିନ୍ଧୁଥିଲେ । ସେ ଟୋପି ଗୋଟାଏ ଶିଆଳ ଛାଲରେ ତିଆରି । କାହିଁକି ? ତା'ର କାରଣ ଜାଣିବାକୁ ହେଲେ ପୁରା କାହାଣୀଟିଏ ଶୁଣିବାକୁ ହେବ :

ବହୁ ପ୍ରାଚୀନ କାଳର କଥା । ଚୀନ ଦେଶର ଗୋଟାଏ ଗାଁରେ ବାସ କରୁଥାଏ ଅଟାଙ୍ଗ ନାମକ ଗରିବ ଯୁବକ । କୁଡ଼ିଆଟି ଛଡ଼ା ତା'ର ନାମକୁ ମାତ୍ର ଖଣ୍ଡିଏ ଜମିଥାଏ । କିନ୍ତୁ ସେ ଜମିରେ ଏମିତି ଗୋଟାଏ ସମ୍ପତ୍ତି ଥାଏ, ଯାହା ଯୋଗୁଁ ସେ ସ୍ୱଚ୍ଛନ୍ଦରେ ଚଳୁଥାଏ ।

ସେ ସମ୍ପତ୍ତି ହେଲା ଗୋଟାଏ ଡାଳିମ୍ବ ଗଛ । ସେ ଗଛର ଡାଳିମ୍ବ ଯିଏ ଥରେ ଖାଇଛି, ସେ କେବେ ବି ତାହାର ସ୍ୱାଦ ଭୁଲିପାରିବ ନାହିଁ । ତେଣୁ ଅଟାଙ୍ଗର ଡାଳିମ୍ବ ବହୁତ ମୂଲ୍ୟରେ ବିକ୍ରି ହୁଏ । ଅଟାଙ୍ଗ ବେଶ ଖୁସିରେ ଚଳୁଥାଏ । ସଂସାରରେ ତା'ର ଆଉ କେହି ନଥାନ୍ତି ।

ସେ ଡାଳିମ୍ବ ଗଛକୁ ଚୋର ଖଣ୍ଟଙ୍କ କବଳରୁ ରକ୍ଷା କରିବା ନିମନ୍ତେ ଅଟାଙ୍ଗ ତା' ଚାରିକଡ଼େ ପଥର ପାଚେରି ତୋଳିଥାଏ । ସେତିକି ନୁହେଁ, ଯେତେବେଳେ ଡାଳିମ୍ବ ପାଚିବା ସମୟ, ସେତେବେଳେ ସେ ସେହି ଡାଳିମ୍ବ ଗଛ ତଳେ ତାକୁ ଜଗି ଶୋଉଥାଏ ।

ଦିନେ ସକାଳେ ଉଠି ସେ ଦେଖିଲା, କେତୋଟି ଡାଳିମ୍ବ କିଏ ଚୋରି କରିନେଇ ଯାଇଛି । ସେ ଆଶ୍ଚର୍ଯ୍ୟ ହେଲା । କାରଣ କେଉଁଠାରେ ହେଲେ ମଣିଷଙ୍କ ପାଦଚିହ୍ନ ପଡ଼ି ନଥାଏ ।

ପରଦିନ ରାତିରେ ପୁଣି କେତୋଟି ଡାଳିମ୍ବ ଚୋରି ଗଲା । ଅଟାଙ୍ଗ ସେତିକି ଆଶ୍ଚର୍ଯ୍ୟ ହେଲା,

ପାରସ୍ୟର ଲୋକକଥା



ସେତିକ ଦୁଃଖିତ ହେଲା । ତୃତୀୟ ରାତିରେ ସେ ଚେଇଁ କରି ରହିଲା । ଦେଖିଲା ଗୋଟାଏ ଶିଆଳ ପାଟେଣି ଡେଇଁ ଆସି ଡାଲିମ୍ବ ଗଛ ଚଢ଼ିଲା । ଅହାଙ୍ଗ ଉଠିପଡ଼ି ଚଟାପଟ ଶିଆଳର ଲାଞ୍ଜ ଧରି ପକାଇଲା । କିନ୍ତୁ ଶିଆଳ ତଡ଼ିତ୍ ଗାତରେ ଖସି ପଳାଇଲା ।

ଅହାଙ୍ଗ ଲକ୍ଷ୍ୟ କରି ଦେଖିଲା, ଯିବା ବେଳକୁ ଶିଆଳ କାନ୍ଥ ଦେହରେ ଥିବା ଗୋଟାଏ ସୁଡ଼ଙ୍ଗ ଭିତର ଦେଇ ପଳାଇଗଲା । ପରଦିନ ଅହାଙ୍ଗ ସେ ସୁଡ଼ଙ୍ଗ ଭିତରେ ଫୁଲଏ ଅଠା ରଖିଦେଲା । ସେ ଅଠାରେ ଥରେ ପଡ଼ିଲେ ସେଥିରୁ ଖସିଯିବା ଅସମ୍ଭବ । ଅହାଙ୍ଗର ଯୋଜନା କାମ ଦେଲା । ରାତିରେ ଶିଆଳ ଆସିଲା ପାଟେଣି ଡେଇଁ । କିନ୍ତୁ ଅହାଙ୍ଗ ତାକୁ ଧରିବାକୁ ଚେଷ୍ଟା କରିବାରୁ ସେ ସୁଡ଼ଙ୍ଗ ଦେଇ ତରତରରେ ପଳାଇ ଯାଉଁ ଯାଉଁ ଅଠାରେ ଅଟକିଗଲା । ଯେତେ ଚେଷ୍ଟା କଲେ ବି ଖସିଯାଇ ପାରିଲା ନାହିଁ ।

ଅହାଙ୍ଗ ତା' ପାଖକୁ ଯାଇ କହିଲା, "ଏଥର ?"

ଶିଆଳ କହିଲା, "ଅହାଙ୍ଗ୍ ! ମୁଁ ତମର ବହୁତ ଉପକାର କରିବି । ମୋତେ ମୁକ୍ତ କର ।"

ଶିଆଳ ମଣିଷ ଭଳି କଥା କହିବାର ଦେଖି ଅହାଙ୍ଗର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ଶିଆଳ ପୁଣି କହିଲା, "ଏଥର ବୁଝି ପାରୁଛ ତ ? ମୁଁ ସାଧାରଣ ଶିଆଳ ନୁହେଁ । ମୁଁ ଜଣେ ଯାଦୁକର । ଅଭିଶାପ ପାଇ ଗୋଟାଏ ଜନ୍ମ ଶିଆଳ ରୂପେ ଜୀବନ କଟାଉଛି ।"

"ଯେତେବେଳେ ତୁମେ ଶିଆଳ ହୋଇ ରହିଛ । ମୋର କେଉଁ ଉପକାର କରି ପାରିବ ?" ଅହାଙ୍ଗ ପଚାରିଲା ।

"କ'ଣ କରି ନପାରିବି ? ଇଚ୍ଛା କଲେ ଏ ରାଜ୍ୟର ରାଜକନ୍ୟା ସହ ତମ ବିବାହ କରିଦେଇ ପାରିବି !" ଶିଆଳ କହିଲା ।

"ସତେ ? ଦେଖିବା, ସେ ବ୍ୟବସ୍ଥା କର !" ଏହା କହି ଅହାଙ୍ଗ ଶିଆଳକୁ ସେ ଅଠାରୁ ଉଠାଇ ଆଣି ତେଲ ଦ୍ୱାରା ତା' ଦେହରୁ ଅଠା ଛଡ଼ାଇ ଦେଲା ।

ଶିଆଳ ଭୋର ବେଳକୁ ନଈ ପାରି ହୋଇ ଯାଇ ରାଜାଙ୍କ ଉଆସରେ ପହଞ୍ଚିଗଲା । ରାଜାଙ୍କୁ କହିଲା, "ଶୁଣିଛି, ଆପଣଙ୍କ ପାଖରେ ଏମିତି ଗୋଟାଏ ଚଲୁଣି ଅଛି, ଯାହା ଦ୍ୱାରା ଭଲ ହୀରା ବା ମୋତି ମାଣିକ ନିକୃଷ୍ଟ ରତ୍ନମାନଙ୍କ-ଠାରୁ ଅଲଗା କରିହୁଏ । ଆପଣ ମୋତେ ଦୁଇଦିନ ପାଇଁ ସେ ଚଲୁଣି ଦିଅନ୍ତେ ନାହିଁ ?"

ରାଜା ଆଶ୍ଚର୍ଯ୍ୟ ହୋଇ କହିଲେ, "ତୁମେ ଶିଆଳ ହୋଇ ଯେ କଥା କହିପାରୁଛ, ଏହା ବିସ୍ମୟକର ବ୍ୟାପାର । ତୁମେ ଚଲୁଣି କାହିଁକି ମାଗୁଛ, ତାହା ଆହୁରି ବିସ୍ମୟକର ।"

"କଥା କ'ଣ କି, ମହାରାଜ ଅଟାଙ୍ଗ ଗଦାଏ ହୀରା ନୀଳା ପାଇଛନ୍ତି । ମୁଁ ତାଙ୍କର ଦୂତ ହିସାବରେ ଆସିଛି । ସେ ଭଲ ରତ୍ନ ସବୁ ବାହାର କରିନେଇ ବାକିତକ ଫିଙ୍ଗିଦେବେ ।"

ରାଜା ପଚାରିଲେ, "ମହାରାଜା ଅଟାଙ୍ଗ ? ସେ କିଏ ? ମୁଁ ବାସ୍ତବିକ ତାଙ୍କ ନାମ ଧାମ ଜାଣି ନଥିଲି !"

"କିପରି ଜାଣନ୍ତେ ? ସେ ନୂଆ ବଣ ଭିତରେ ବିରାଟ ପ୍ରାସାଦ ଅଧିକାର କରି ରହିଛନ୍ତି ! ବାହାର ଜଗତ ସହିତ ତାଙ୍କର ବିଶେଷ ସମ୍ପର୍କ ନାହିଁ ।" ଶିଆଳ କହିଲା ।

"କିନ୍ତୁ ନୂଆ ବଣ ତ ରାକ୍ଷସର ରାଜ୍ୟ !" ରାଜା ଆଶ୍ଚର୍ଯ୍ୟ ହୋଇ କହିଲେ ।

"ରାକ୍ଷସର ରାଜ୍ୟ ଥିଲା । କିନ୍ତୁ ମହାରାଜା ଅଟାଙ୍ଗ ମହାନ୍ ଯାଦୁକର । ସେ ଯାଦୁ ଦ୍ୱାରା



ରାକ୍ଷସକୁ ମାରି କରି ତା' ଦୁର୍ଗ ଅଧିକାର କରିଛନ୍ତି ।" ଶିଆଳ କହିଲା ।

"ସେ ଅବଶ୍ୟ ଯାଦୁକର ହୋଇଥିବେ । ନହେଲେ ତୁମ ଭଳି ଶିଆଳକୁ କଥା କୁହାଇ ପାରନ୍ତେ ?" ଏହା କହି ରାଜା ଚଲୁଣି ଦେଇଦେଲେ । ଦୁଇଦିନ ପରେ ଶିଆଳ ସେତେବେଳେ ଚଲୁଣି ଆଣି ଫେରାଇଲା, ସେତେବେଳେ ସେଥିରେ ଲାଗିଥିଲା କିଛି ରଙ୍ଗ ବେରଙ୍ଗର ପଥର କଣା । ରାଜକୁମାରୀ ତାହା ଦେଖି କହିଲେ, "ଆରେ ! ସତରେ ତ ଏଥିରେ ହୀରା ନୀଳା ପରୀକ୍ଷା ହୋଇଥିଲା !"

"ରାଜକୁମାରୀ ! ଆମ ମହାରାଜାଙ୍କ ପ୍ରାସାଦରେ ଯେତେ ରତ୍ନରାଶି, ତାହା କଳ୍ପନା



କଣହେବ ନାହିଁ । ତୁମ ଭଳି ଜଣେ ସୁନ୍ଦରୀ ରାଜକନ୍ୟା ଆମର ମହାରାଣୀ ହେଲେ କେଡ଼େ ଭଲ ହୁଅନ୍ତା !"

ରାଜକୁମାରୀ ଲଜେଇଯାଇ ରାଜାଙ୍କ ଆଡ଼େ ଅନାଇଲେ । ରାଜା କହିଲେ, "ଶିଆଳ ମହାଶୟ ! ପ୍ରସ୍ତାବ ପକାଅ !"

"ମହାରାଜ, ପ୍ରସ୍ତାବ ପକାଇବା ଓ ପକ୍କା କରିବା ଦାୟିତ୍ୱ ମୋର । ଆପଣଙ୍କ କନ୍ୟା ଆମର ରାଣୀ ହେବାର ଯୋଗ୍ୟ ! ମୁଁ ଏ ବିଷୟରେ ନିଃସନ୍ଦେହ । ମୁଁ ଯେଉଁ କନ୍ୟା ବାଛିବି, ଆମ ରାଜା ସେହି କନ୍ୟାଙ୍କୁ ବିଭା ହେବେ । ବର୍ତ୍ତମାନ ତାରିଖ ସ୍ଥିର କରାଯାଉ । ଡେରି କାହିଁକି ?"

ଶିଆଳ ସେଇଠାରେ ପ୍ରସ୍ତାବ ପକ୍କା କଲା । ଦିନ ଠିକ୍ ହୋଇଗଲା ।

ଶିଆଳ ଯାଇ ଅଠାଙ୍ଗ୍‌କୁ ଧରି ଆସିଲା । ମଝି ନଈରେ ତାକୁ ଠିଆ କରାଇ ପ୍ରାସାଦରେ ପହଞ୍ଚି କହିଲା, "ରାଜା ! ବର ପାଞ୍ଚସହ ସୈନିକ ସହ ନଈ ପାରି ହେବା ବେଳେ ବନ୍ୟା ଆସିଲା । ସବୁ ସୈନ୍ୟ ଭାସିଗଲେ । କିନ୍ତୁ ରାଜକନ୍ୟାଙ୍କ ଭାଗ୍ୟ ଦେଖନ୍ତୁ । ତାଙ୍କ ବର ବଞ୍ଚିଗଲେ । ଖାଲି ତାଙ୍କ ରାଜକୀୟ ପୋଷାକ କାଦୁଆ ମାଟିଆ ହୋଇଯିବା ଫଳରେ ସେ ତାକୁ କାଢ଼ି ଭସାଇ ଦେଇ ଜଳରେ ଠିଆ ହୋଇଛନ୍ତି ।"

ରାଜା ତତ୍‌କ୍ଷଣାତ୍ ନୂଆ ପୋଷାକ ଧରି ନଈ କୂଳକୁ ଗଲେ । ଅଠାଙ୍ଗ କୂଳକୁ ଯାଇ ସେସବୁ ପିନ୍ଧି ନଅରକୁ ଗଲା ।

ବାହାଘର ହୋଇଗଲା । ତା'ପରେ ସେଠାରେ କିଛିଦିନ ରହିବା ପରେ ବୋହୂ ଧରି ନିଜ ଘରକୁ ଯିବା କଥା ।

"ଆମ ଜୁଆଁଇଙ୍କୁ ପାଛୋଟି ନେବାକୁ କେହି ଆସିବେ ନାହିଁ ?" ରାଜା ଶିଆଳକୁ ପଚାରିଲେ ।

"ଆସିବେ ନାହିଁ ମାନେ ? ସେମାନେ ଆସି ନଈ ସେ ପାରିରେ ଅଛନ୍ତି । ହାଲେ ବନ୍ୟା ଆସିବ ବୋଲି ମୁଁ ସେମାନଙ୍କୁ ଆସିବାକୁ ମନା କରିଛି ।" ଶିଆଳ କହିଲା ।

ନଈ ସେ ପାଖ ଦେଇ ଦଳେ ବଣିକ ଯାଉଥିଲେ । ଶିଆଳ ଆଗତୁରା ଯାଇ

ସେମାନଙ୍କୁ କହିଲା, "ଡାକୁଦଳ ଆସୁଛନ୍ତି । ସାବଧାନ !"

"ଆମେ କରିବା କ'ଣ ? ଶିଆଳ ହୋଇ ତମେ ଯଦି କଥା କହି ପାରୁଛ, ତେବେ ଆମକୁ ବିପଦରୁ ରକ୍ଷା କରିପାରିବା ଭଳି ଶକ୍ତି ବି ତମର ଅଛି ।" ବଣିକ ଦଳପତି କହିଲେ ।

"ତମେମାନେ କହିବ କି ତମେମାନେ ମହାରାଜା ଅଠାଙ୍ଗଙ୍କର ଲୋକ ।" ଶିଆଳ ବତାଇ ଦେଲା ।

ରାଜାଙ୍କ କର୍ମଚାରୀମାନଙ୍କୁ ସେ ଲୋକେ ସେଇଆ କହିଲେ । ବରକନ୍ୟାଙ୍କୁ ସେମାନଙ୍କ ହାତରେ ସମର୍ପି ଦେଇ ରାଜାଙ୍କ ଲୋକ ବାହୁଡ଼ି ଗଲେ ।

ଶିଆଳ ଯାଇ ବଣ ଭିତରେ ପହଞ୍ଚି ରାକ୍ଷସକୁ ଭେଟିଲା । ସେତେବେଳକୁ ରାକ୍ଷସ ବୁଢ଼ା ହେଲଣି । ଶିଆଳ କହିଲା, "ରାଜାଙ୍କ ବିଶାଳ ସୈନ୍ୟବାହିନୀ ତମକୁ ମାରିଦେବାକୁ ଆସୁଛନ୍ତି ।"

"ମୋର ତ ଆଉ ସେମାନଙ୍କ ସହ ଲଢ଼ିବା ପାଇଁ ବଳ ନାହିଁ !" ରାକ୍ଷସ ଆତଙ୍କିତ ହୋଇ କହିଲା ।

"ତେବେ ଏଇଠି କାଠଗଦା ଭିତରେ ଲୁଚି ରୁହ । କେହି ତୁମର କିଛି କରିବେ ନାହିଁ ।" ଶିଆଳ କହିଲା ।

ରାକ୍ଷସ ସେଇଆ କଲା । ତା' ପ୍ରାସାଦରେ ଆସି ଅଠାଙ୍ଗ ସସ୍ତ୍ରୀକ ରହିଲା । ଅଠାଙ୍ଗ ପ୍ରାସାଦର ଅଧିକାରୀ ହେବାରୁ ରାକ୍ଷସକୁ ରାଜା ବୋଲି ମାନୁଥିବା ଆଖପାଖର ସମସ୍ତ ଲୋକେ ତାକୁ ବି ରାଜା ରୂପେ ମାନିଲେ । ରାକ୍ଷସ ତା' ମୃତ୍ୟୁ ଯାଏ ଲୁଚି ରହିଥାଏ । ଶିଆଳ ତାକୁ ସବୁ ଖାଦ୍ୟ ଆଣି ଖାଇବାକୁ ଦେଉଥାଏ ।

କାଳକ୍ରମେ ଶିଆଳର ମୃତ୍ୟୁ ହେଲା । ଅଠାଙ୍ଗ ତା' ଚମଡ଼ାରେ ନିଜ ଟୋପି ତିଆରି କଲା । ସେହି ଟୋପି ହେଲା ତା'ର ଓ ତା' ଉତ୍ତରାଧିକାରୀମାନଙ୍କର ରାଜମୁକୁଟ ।






# ମାଟି ଓ ଆଖୁ

ବନସ୍ପୁଭୂଷଣ ଥିଲେ କବି । ଦିନେ ସେ ରଘୁ ପ୍ରଧାନର ତେଜରାତି ଦୋକାନ ଆଗଦେଇ ଯାଉଛନ୍ତି, ସେତିକିବେଳେ ପ୍ରଧାନେ ଗାଁ ଅବଧାନଙ୍କୁ କହୁଥିବାର ଶୁଣିଲେ, "ଅବଧାନେ, ମୁଁ ସାରା ଜୀବନ କଣାବକାହିଁ ତଣ ଚାଲିଛି !"

ବାସ୍ ! ଘରକୁ ଯାଇ କବି ବନସ୍ପୁଭୂଷଣ ଲେଖିଲେ ଗୋଟିଏ କବିତା । ତାର ପ୍ରଥମ ପାଦ :

ଜୀବନ ବଦଳ କେତେ ଯେ ସଉଦା କରି,<br>
ଏବେ ବୋଝ ନେଇ କିପରି ମୁଁ ଯିବି<br>
ଜୀବନର ଆର ପାରି ?

କବିତାଟି ସେ ଜମିଦାରଙ୍କୁ ଶୁଣାଇଲେ । ଜମିଦାର ବହୁତ ଖୁସି ହୋଇ ତାଙ୍କୁ ଏକ ଶତ ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ଦେଲେ । ସେ ପୁରସ୍କାର ପାଇବାରୁ ଅନ୍ୟମାନଙ୍କ ସହ ରଘୁ ପ୍ରଧାନ ବି ତାଙ୍କୁ ବଧେଇ ଜଣାଇଲେ । କବି କହିଲେ, "ପଧାନେ ! ସେଦିନ ତମର କଥା ଶୁଣି ମୁଁ ଏ କବିତା ଲେଖିଲି !"

ପଧାନେ କହିଲେ, "ସତେ ? କଥାର ମୂଲ୍ୟ ସିଏ ଯେମିତି ବୁଝେ !"

ସେହିଦିନ କବି ପଧାନଙ୍କର ଏ କଥାଟିକୁ ଭିତ୍ତି କରି ଲେଖିଲେ :

କହି ଚାଲେଁ ସଦା କଥା,<br>
କାହା କାନେ ସିଏ ଶୁଭଇ ମଧୁର<br>
କାହା ହୃଦେ ଦିଏ ବ୍ୟଥା !

ଏହି ମର୍ମରେ ଲିଖିତ ତାଙ୍କର ଏକ ଦୀର୍ଘ କବିତା ସେ ନେଇଯାଇ ସେ ଅଞ୍ଚଳର ରାଜ-ପ୍ରତିନିଧିଙ୍କୁ ଶୁଣାଇଲେ ।

ରାଜ-ପ୍ରତିନିଧି ମୁଗ୍ଧ ହୋଇ ବନସ୍ପୁ-ଭୂଷଣଙ୍କୁ ଦୁଇଶତ ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ଦେଲେ ।

ସମରେନ୍ଦ୍ର

ଯେତେବେଳେ ପ୍ରଧାନେ ଏକଥା ଶୁଣିଲେ, ସେ କବିଙ୍କୁ ପୁଣି ଅଭିନନ୍ଦନ ଜଣାଇଲେ । କବି କହିଲେ, "ପ୍ରଧାନେ ! ଏଥର ବି ମୋ ପ୍ରେରଣାର ଉତ୍ସ ତମେ ।"

"ସତେ ? ବାଟରେ ଗଲାବେଳେ କେତେ କଥା କହିଦିଏଁ । ତମେ ସିନା ମୋ ଭାବ ଚିହ୍ନିଲ !" ପ୍ରଧାନେ କହିଲେ ।

କବି ଘରକୁ ଯାଇ ଆଉ ଏକ ଦୀର୍ଘ କବିତା ଲେଖିଲେ । ତାହାର ପ୍ରଥମ କେଇ ଧାଡ଼ି ଏମିତି :

ଜୀବନ ବାଟରେ କେତେ ଯେ ପଡ଼ିଛି
ମାଟି ଗୋଡ଼ି ସହ ମଣି,
ଚତୁର ବାଛୋଇ ତୋଳି ନିଏ ସିନା
ହୀରା କିଏ ବୋଲି ଜାଣି !

ଏ କବିତା ସେ ଏଥର ରାଜଦରବାରରେ ଯାଇ ପଢ଼ିଲେ । ରାଜା ଏତେ ଖୁସି ହେଲେ ଯେ କବିଙ୍କୁ ଗୋଟିଏ ସମ୍ବର୍ଦ୍ଧନା ଦେବାର ବ୍ୟବସ୍ଥା କଲେ । ଏକଥା ପ୍ରଚାର ହୋଇଗଲା । ସମ୍ବର୍ଦ୍ଧନା ସଭା ଦିନ ରଘୁ ପ୍ରଧାନ ବି ଯାଇ ଦରବାରରେ ପହଞ୍ଚିଗଲେ । ସଭା ଆରମ୍ଭ ପୂର୍ବରୁ ପ୍ରଧାନେ ରାଜାଙ୍କୁ ଦେଖି ଆଉ ସମ୍ଭାଳି ପାରିଲେ ନାହିଁ । ସେ କହିଲେ, "ମହାରାଜ, ଆପଣ ବିଶ୍ୱାସ କରିବେ କି ନା ଜାଣେ ନା, କିନ୍ତୁ କବି ବନସ୍ତୁଭୂଷଣଙ୍କର ସମସ୍ତ କବିତା ମୁହିଁ ଉଚ୍ଚାରଣ କରିଥିବା ଜ୍ଞାନ ଭିତରୁ ଜାତ ।"

ସେ ଏକଥା କହିବା ବେଳକୁ କବି ଆସି ପହଞ୍ଚିଗଲେ ଓ କହିଲେ, "ମହାରାଜ, ଏହା ସତ୍ୟ ।" କବି ତା'ପରେ ପ୍ରଧାନଙ୍କର କେଉଁ



ବାକ୍ୟ ତାଙ୍କୁ କେଉଁ କବିତାର ପ୍ରେରଣା ଦେଇଥିଲା, ସେକଥା ଗପିଗଲେ ।

ପଧାନେ ଆନନ୍ଦିତ ହୋଇ କହିଲେ, "ମହାରାଜ, କବିଙ୍କ ପୁରସ୍କାରରୁ ମୋତେ ବି କିଛି ଅଂଶ ମିଳିବା ଉଚିତ । ନୁହେଁ କି ?"

ରାଜା ତାଙ୍କ ଉଦ୍ୟାନରୁ ଖଣ୍ଡିଏ ଆଖୁ ମଗାଇ ଆଣି କହିଲେ, "ପଧାନେ, ଏ ଆଖୁ କେଉଁଠୁ ଆସିଲା ?"

"ଆଜ୍ଞା, ମାଟିରୁ ।" ପଧାନେ କହିଲେ ।

"ଆଚ୍ଛା, ତମେ ଏ ଆଖୁ ଚୋବାଇ ପାରିବଟି ?" ରାଜା ପଚାରିଲେ ।

"ନିଶ୍ଚୟ ! ଆନନ୍ଦରେ ଚୋବାଇବି ।" ପଧାନେ କହିଲେ ।

"ତେବେ ଏ ଆଖୁ ତ ମାଟିରୁ ଜନ୍ମିଛି ?" ରାଜା ପଚାରିଲେ ।

"ହଁ, ଆଜ୍ଞା, ମାଟିରୁ ।" ପଧାନେ କହିଲେ ।

"ତମେ ଆଖୁ ନ ଚୋବାଇ ମାଟି ଚୋବାଇବ ?" ରାଜା ପଚାରିଲେ ।

ପଧାନେ ଚୁପ୍ ରହିଲେ । ସମସ୍ତେ ହସିଲେ ।

ରାଜା ବୁଝାଇ ଦେଲେ, "କବିତ୍ୱ ଏହି ଆଖୁପରି । ସାଧାରଣ ଭାବରେ ଆମର ଯେଉଁ ଜ୍ଞାନ ଥାଏ, ତାହାହିଁ କବିତ୍ୱର ଉତ୍ସ ହୋଇପାରେ, କିନ୍ତୁ କବିତ୍ୱ ଓ ଉତ୍ସ ଏକ ନୁହେଁ । ମାଟି ତା' ନିଜ ଗୁଣରେ ମହତ୍ । ତମ ଜ୍ଞାନ ବି ସେମିତି ତା' ନିଜ ଗୁଣରେ ମହତ୍ । କିନ୍ତୁ କବିତ୍ୱ ଯାହାଠିଁ ସ୍ଫୁରିତ ହେବ, ସେ ହେଲା କବି । ତମର କଥା ଅନେକେ ଶୁଣିଥିବେ । କବିତା ଲେଖିଲେ ଜଣେ । ତମ କଥା ନ ଶୁଣିଥିଲେ ବି ସେ ଆଉ କାହା କଥାକୁ ଭିତ୍ତି କରି କବିତା ଲେଖିଥାନ୍ତେ । କିନ୍ତୁ କବିତ୍ୱ ନଥିଲେ ତମେ ଯେତେ ବକ୍ ବକ୍ କଲେ ବି ତମ ଶ୍ରୋତା କବିତା ଲେଖି ପାରନ୍ତା ନାହିଁ ।"

"ମଣିମା ! ବୁଝିଗଲି ।" ପଧାନେ କହିଲେ ।



# ଦିବ୍ୟଦୃଷ୍ଟି !

ପ୍ରତାପଗଡ଼ର ରାଜାଙ୍କର ପୋଷାକପତ୍ର କଚୁକଚ କରୁଥାଏ ସୁବଳ । ଥରେ ଥରେ ରାତିରେ ସେ ସଫା କରିବା ପାଇଁ ଆଣିଥିବା ରାଜକୀୟ ପୋଷାକ ପିନ୍ଧି ରାଜପଥରେ ଏକାକୀ ବୁଲିବୁଲି କରି ଆନନ୍ଦ ପାଏ । ହଠାତ୍ କେବେ କେହି ତାକୁ ଦେଖି ପକାଇଲେ ତା' ପୋଷାକ ଯୋଗୁଁ ତାକୁ ନମସ୍କାର କରି ପକାନ୍ତି । ସେ ବଡ଼ ବର୍ଗ ବୋଧ କରେ ।

ଦିନେ ରାତିରେ ସେମିତି ରାଜକୀୟ ପୋଷାକ ପିନ୍ଧି ସେ ଠହଲ୍ ମାରୁଛି, ହଠାତ୍ ଜଣେ ବାବାଜୀଙ୍କ ଉପରେ ତା' ଆଖି ପଡ଼ିଲା । ବାବାଜୀ ତା' ଆଡ଼କୁ କଠାମଠ କରି ଅନାଇ ଚାଲିଗଲେ । ନମସ୍କାର ନ ପାଇବାରୁ ସୁବଳ ଚିଡ଼ି ଯାଇ କହିଲା, "ହଇରେ, ତୁ କିଏ ? ବାବାଜୀ ବେଶରେ ଖଣ୍ଟ ହୋଇଥିବୁ ପରା !"

"ତୁମେ କିଏ ?" ବାବାଜୀ ପଚାରିଲେ ।

"ମୁଁ ରାଜା । ଦେଖି ପାରୁ ନାହଁ ?" ସୁବଳ କଡ଼ା ଭାବରେ ଉତ୍ତର ଦେଲା ।

ବାବାଜୀ ତାକୁ ଆଉ ଥରେ ଚାହିଁ ଦେଇ ବୁଲି ପଡ଼ି ଚାଲିଗଲେ । ହଠାତ୍ ସୁବଳ ବୁଝି ପାରିଲା, ସେ ବାବାଜୀ ଆଉ କେହି ନୁହେଁ, ଛଦ୍ମବେଶୀ ରାଜା । ଭୟରେ ସେ ଥରହର ହେଲା । ହଠାତ୍ ଯାଇ ବାବାଜୀଙ୍କ ଗୋଡ଼ତଳେ ପଡ଼ିଯାଇ କହିଲା, "ବାବା ! ଆପଣ ସିଦ୍ଧ ପୁରୁଷ !"

"କିପରି ଜାଣିଲ ?" ଛଦ୍ମବେଶୀ ରାଜା ପଚାରିଲେ ।

"ଆପଣ ଚାହିଁଦେଇ ବୁଝିଗଲେ କି ମୁଁ ରାଜା ନୁହେଁ । ସେଥିପାଇଁ ମୋତେ ଖାତିର କଲେ ନାହିଁ । ମୁଁ ପ୍ରକୃତରେ ରାଜାଙ୍କ ସେବକ । ଆପଣଙ୍କ ଦିବ୍ୟଦୃଷ୍ଟି ଆଗରେ ଧରା ପଡ଼ିଗଲି ।"

ରାଜା ହସିଦେଇ ଚାଲିଗଲେ ।





# ବଳ ଓ ଢେକ

ଗୋବିନ୍ଦପୁରର ଜମିଦାର ଥରେ ତାଙ୍କ ଗୁମାସ୍ତାଙ୍କ ସହ କୌଣସି ଦୂର ଗ୍ରାମରୁ ଫେରୁଥାନ୍ତି । ବାଟରେ ଗୋଟିଏ ଆମ୍ବ ବଗିଚା ପଡ଼ିଲା । ସେ ବାଟରେ ଜମିଦାର ପୂର୍ବରୁ କେବେ ଆସି ନଥିଲେ । ବଗିଚା ଆଡ଼େ ଅନାଇ ସେ ମୁଗ୍ଧ ହୋଇ ଦଣ୍ଡେ ଠିଆ ହୋଇଗଲେ । ସବୁ ଗଛରେ ଆମ୍ବ ଫଳିଥାଏ । ସେସବୁର ପରିମାଣ ପ୍ରଚୁର । "ବାଃ, କେଡ଼େ ଚମତ୍କାର ଆମ୍ବ ବଗିଚା!" ଜମିଦାର କହିଲେ ।

ଗୁମାସ୍ତା ହସିଲେ ଓ କହିଲେ, "ଏଭଳି ଆମ୍ବ ବଗିଚା କ'ଣ କୌଣସି ସାଧାରଣ ଲୋକର ସମ୍ପତ୍ତି ହୋଇପାରେ ? ଏହା ନିଶ୍ଚୟ କୌଣସି ରାଜା ଜମିଦାରଙ୍କର ହୋଇଥିବ ପରା !" ଗୁମାସ୍ତା କହିଲେ ।

"ମୁଁ ମଧ୍ୟ ସେଇଆ ଅନୁମାନ କରୁଥିଲି । ଏ ବିରାଟ ଆମ୍ବ ବଗିଚା ସତରେ କାହାର ? ମାଲିକର ଘର ଏହି ଗାଁରେ ହୋଇଥିବ । ନହେଲେ ତ ସବୁ ଲୁଟ୍‌ତରାଜ ହୋଇଯା'ନ୍ତା । ଗଛରେ ଏତେ ଫଳ ରହନ୍ତା କାହୁଁ !" ଜମିଦାର କହିଲେ ।

"ହଜୁର ! ଏ ବଗିଚା ଆପଣଙ୍କର । ଆପଣ ତ କେବେ ଏଆଡ଼େ ଆସି ନାହାନ୍ତି, ଜାଣିବେ କିପରି ?" ଗୁମାସ୍ତା କହିଲେ ।

"ସତେ ? ଓଃ ହୋ, ଏଇ ଗାଁର ନାମ ଦେବଳା ପରା । ମୁଁ ଜାଣେ ଦେବଳାରେ ଆମର ଆମ୍ବ ବଗିଚା ଅଛି । ତେବେ ବାପା ସବୁ ବୁଝୁଥିଲେ । ତାଙ୍କ ପରେ ମୁଁ ଥରେ ଆସି ଦେଖିଯିବି ବୋଲି ଆଉ ଆସି ନାହିଁ ।" ଜମିଦାର ଖୁସି ହୋଇ କହିଲେ ।

"ଆମ୍ବଗଛ ପାଇଁ ଏଠାକାର ମାଟି ଅତି ଉର୍ବର ବୋଲି ଜଣାଗଲା ।" ଗୁମାସ୍ତା କହିଲେ ।

ଗୌରୀଶଙ୍କର

"ଆଛା, ଏପରି କଥା ! କିନ୍ତୁ ଏପରି ଫଳ ଭରା ଉଦ୍ୟାନକୁ କେହି ଜଗିବାକୁ ନାହିଁ, ଏହା କିପରି କଥା ?" ଜମିଦାର ପଚାରିଲେ ।

"ହଜୁର, ଏ ଗାଁର ଦାମୋଦର ନାମକ ଯୁବକକୁ ମୁଁ ଏ ବଗିଚାର ତତ୍ତ୍ୱାବଧାରକ ନିଯୁକ୍ତ କରିଛି । ସେ ଯେପରି ସାଧୁ, ସେହିପରି ସଜାଗ । ତେଣୁ ଆମର ଭୟ ନାହିଁ ।" ଗୁମାସ୍ତା କହିଲେ ।

"ଭୟ ନାହିଁ ? କାହିଁ ତମର ଦାମୋଦର ? ବର୍ତ୍ତମାନ ବି ତ ଯେ କୌଣସି ଲୋକ ଆମ୍ବ ଚୋରି କରିନେଇ ଯାଇପାରେ !" ଜମିଦାର କହିଲେ ।

ଗୁମାସ୍ତା ଏ କଥାର ସିଧାସଳଖ ଉତ୍ତର ଦେଇ ନପାରି ଖାଲି କହିଲେ, "ନିଶ୍ଚୟ କିଛି ଅତି ଜରୁରୀ କାମରେ ଦାମୋଦର କୁଆଡ଼େ ଯାଇଥିବ । କିନ୍ତୁ ସେ କିଛି ବ୍ୟବସ୍ଥା କରିଯିବା ଉଚିତ ଥିଲା ।"

ଏହା କହିବା ସଙ୍ଗେ ସଙ୍ଗେ ଗୁମାସ୍ତା ଏଣେ ତେଣେ ଅନାଇଲେ । ହଠାତ୍ ତାଙ୍କ ଆଖି ପଡ଼ିଲା ଜଣେ ବୁଢ଼ୀ ଉପରେ । ବୁଢ଼ୀ ଗୋଟାଏ ଗଛ ମୂଳରେ ବସି ସେମାନଙ୍କୁ ଅନାଇଥାଏ ।

"ଦେଖୁଛନ୍ତି ହଜୁର ? ସେ ବୁଢ଼ୀ ଦାମୋଦରର ମା । ମୁଁ ଠିକ୍ ଅନୁମାନ କରିଥିଲି । ଦାମୋଦର ବଗିଚା ଛାଡି କୁଆଡ଼େ ଗଲେ ବି ବଗିଚା ଉପରେ ଆଖି ରଖିବାର ବ୍ୟବସ୍ଥା କରି ଯାଇଥିବ ।" ଗୁମାସ୍ତା ଉତ୍ସାହିତ ହୋଇ କହିଲେ ।



"ଗୁମାସ୍ତା ବାବୁ! ଏ ବୁଢ଼ୀ କି ଆଖି ରଖିବ ? ଏହାକୁ ଡରିବ କିଏ ? ଇଏ କ'ଣ କାହାକୁ ବାଧା ଦେଇ ପାରିବ ?" ଜମିଦାର ଏହା କହି ବୁଢ଼ୀ ଆଡ଼େ ଅଗ୍ରସର ହେଲେ । ସେତିକିବେଳେ ଖୁବ୍ ତୀକ୍ଷ୍ଣ ଶିଙ୍ଘ ଥିବା ଗୋଟାଏ ବଳଦ ତାଙ୍କ ପାଖଦେଇ ଚାଲିଗଲା ।

ଜମିଦାର ବୁଢ଼ୀକୁ ପଚାରିଲେ, "ମାଉସୀ, ଏ ବଳଦ କ'ଣ ବିନ୍ଧେ ?"

ବୁଢ଼ୀ ଉତ୍ତର ଦେଲା, "ପୁଅ ସେ କାହାକୁ ବିନ୍ଧିଦେବ କି ନାହିଁ କହିପାରିବି ନାହିଁ । କିନ୍ତୁ ଏ ତା' ଅଧିକାରରେ ଯେତିକି ଜମି ଅଛି, ସେଇଥିରୁ ଘାସ ଖାଏ । ଅନ୍ୟ କାହା ଜମିରେ ପଶି ଘାସ ଖାଏ ନାହିଁ । ବୁଝୁଛି ପୁଅ ?"

ଜମିଦାର କାବା ହୋଇଗଲେ । ସେ ବୁଢ଼ୀ କଥାର ମର୍ମ ବୁଝିଲେ । ବୁଢ଼ୀ ସେମାନେ ମନ୍ଦ ଉଦ୍ଦେଶ୍ୟରେ ବଗିଚା ଭିତରେ ପ୍ରବେଶ କରିଛନ୍ତି ବୋଲି ସନ୍ଦେହ କରି ଏକଥା କହୁଛି । ବୁଢ଼ୀ ଜଣାଇ ଦେଲା କି ଅନଧିକାର ପ୍ରବେଶ ଭଲ ନୁହେଁ । ଅନ୍ୟର ସମ୍ପତ୍ତି ଉପରେ ଲୋଭ କରିବା ଭଲ ନୁହେଁ ।

ଜମିଦାର ବଗିଚା ଭିତରୁ ବାହାରି ଆସିବା ବେଳେ ଗୁମାସ୍ତାଙ୍କୁ କହିଲେ, "ବାସ୍ତବିକ, ଖାଲି ଦେହର ବଳ ଦେଇ ଯେ କିଛି ଜିନିଷ ରକ୍ଷା କରାହୁଏ, ତାହା ନୁହେଁ, ଶରୀର ବଳ କମ୍ ନୁହେଁ । ନିଜର ତେଜ ଦେହର ବଳଠୁଁ ବେଶି କାମ ଦେଇ ପାରେ । ବୁଢ଼ୀର ତେଜ ଅଛି ।"

"ହଁ, ତା'ଛଡ଼ା ଦାମୋଦରକୁ ଏଠିକା ଲୋକେ ଶ୍ରଦ୍ଧା କରନ୍ତି । ତା' ହେପାଜତରେ ଥିବା ବଗିଚାର କେହି ସହଜରେ କ୍ଷତି କରିବ ନାହିଁ ।" ଗୁମାସ୍ତା କହିଲେ ।

ସେ ଦୁହେଁ ବଗିଚା ବାହାରେ ଦାମୋଦରକୁ ଭେଟିଲେ । ଦାମୋଦର ସେମାନଙ୍କୁ ଓଳଗି ହେଲା । ଜମିଦାର ତାକୁ କିଛି ଟଙ୍କା ଦେଇ କହିଲେ, "ଏତିକି ତମେ ତମ ଗାଁ ପାଇଁ ଖର୍ଚ୍ଚ କରିବ ।"





## ଉଚ୍ଚତମ ନାଗଫଣୀ

ନାଗଫଣୀ ଜାତିର ଗଛ ଭିତରେ ସବୁଠାରୁ ବଡ଼ ହୁଅନ୍ତି ସାଗ୍‌ୱାରୋ ନାମକ ଗୁଳ୍ମ। ଦୁଇଶହ ବର୍ଷ ଭିତରେ ଏହା ୪୦ ରୁ ୫୦ ଫୁଟ୍ ପର୍ଯ୍ୟନ୍ତ ବଢିପାରନ୍ତି। ଏହାର ଓଜନ୍ ଦଶ ଟନ୍ ପର୍ଯ୍ୟନ୍ତ ହୋଇପାରେ। ଅବଶ୍ୟ ସେ ଓଜନର ବହୁଳାଂଶ ପାଣି ମାତ୍ର।

## ଆଗ୍ନେୟଗିରି ଭିତରେ ଆଗ୍ନେୟଗିରି

ଆମେରିକାର ଆରିଗନ୍‌ଠିଁ ଥିବା ଆଗ୍ନେୟଗିରି କାହିଁ କେଉଁ ପ୍ରାଗିତିକ ଯୁଗରୁ ରହି ଆସିଛି। ଦଶ କି.ମି. ବାଇଁ ଏ ଆଗ୍ନେୟଗିରି ଭିତରେ ଲୁଚି ରହିଛି ଆହୁରି ଗୋଟିଏ ଆଗ୍ନେୟଗିରି।





## ଭୟଙ୍କର ଛତୁ

'ମରଣ ଛତୁ' ନାମରେ ନାମିତ ଏକ ପ୍ରକାର ଛତୁ ଦେଖିବାକୁ ଅନ୍ୟ ସବୁ ସାଧାରଣ ଛତୁ ଭଳି, କିନ୍ତୁ ତାକୁ ଯିଏ ଖାଇବ ସେ ହୁଏତ ପ୍ରାଣ ହରାଇବ ନଚେତ୍ କୌଣସି ଦୁରାରୋଗ୍ୟ ବ୍ୟାଧିର ଶିକାର ହେବ।

# "CRIPP LE"

## The word can maim a child for life.

Imagine not being able to race your best friend. Imagine not having a best friend. Imagine being struck by Poliomyelitis before you even know the word. Or what it means. And be called a "cripple" for life.

Every year, Poliomyelitis or Polio strikes 275,000 children in India. In rural India, 1 in every 150—200 surviving newborn is in danger of developing polio unless urgent preventive measures are taken. And, while you read this, there are 1.6 million polio-stricken children in the country, most of them handicapped for life. If only they had been immunized... in time.

**PolioPlus**
*The Rotarian Relief Programme*

Rotary International has embarked on a world-wide immunization programme called PolioPlus. Through this programme, Rotary will provide all polio vaccines necessary for upto 5 consecutive years, for children in countries around the world.

Plus immunization against common childhood diseases like measles, diphtheria, tuberculosis, tetanus and whooping cough—diseases which take 3.5 million young lives in the developing world, every year.



**PolioPlus**
*A Rotary International Campaign*
*TO IMMUNIZE THE CHILDREN OF THE WORLD*



*Cut and mail to :*
**Chairman**
**POLIOPLUS CAMPAIGN TRUST**
128, Golf Links
New Delhi-110 003.

**Here's what You Can Do**

YES, WE WISH TO SUPPORT THE POLIOPLUS CAMPAIGN TRUST

We enclose our Cheque/Draft of Rs. ............
Name ..............................................
..................................................
Designation .......................................
..................................................
Company Address ...................................
..................................................
Phone No. .........................................

*Cheques/Drafts should be drawn in favour of POLIOPLUS CAMPAIGN TRUST payable in Bombay. Contributions are exempted from income tax under section 80 (G) of the Income Tax Act, 1961.*



CMP